ଗୁରୁ ସାକ୍ଷାତ୍ ପରମ୍ବ୍ରହ୍ମ ତସ୍ମୈ ଶ୍ରୀଗୁରବେ ନମଃ ॥
ଆବାହନ ନ ଜାନାମି ନୈବ ଜାନାମି ପୂଜନମ୍ ।
ବିସର୍ଜନଂ ନଜାନାମି କ୍ଷମସ୍ୱ ପରମେଶ୍ୱର ॥
ଓଁ ବନ୍ଦେ ମହାପୁରୁଷତେ ଚରଣାରବିନ୍ଦମ୍ ॥

ଓଁ ଶ୍ରୀ ପରମାତ୍ମନେ ନମଃ

## ଶ୍ରୀବିଷ୍ଣୁ ସହସ୍ରନାମ ପଠନ ପ୍ରାରମ୍ଭଃ

ଶୁକ୍ଳାମ୍ବରଧରଂ ବିଷ୍ଣୁଂ ଶଶିବର୍ଣ୍ଣଂ ଚତୁର୍ଭୁଜମ୍ ।
ପ୍ରସନ୍ନବଦନଂ ଧ୍ୟାୟେତ୍ ସର୍ବବିଘ୍ନୋପଶାନ୍ତୟେ ॥
ନାରାୟଣଂ ନମସ୍କୃତ୍ୟ ନରଞ୍ଚୈବ ନରୋତ୍ତମମ୍ ।
ଦେବୀ ସରସ୍ୱତୀଂ ଚୈବ ତତୋଜୟମୁଦୀରୟେତ୍ ॥
ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଳ୍ମଷମ୍ ।
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିମ୍ ॥
ବ୍ୟାସାୟ ବିଷ୍ଣୁରୂପାୟ ବ୍ୟାସରୂପାୟ ବିଷ୍ଣବେ ।
ନମୋ ବୈବ୍ରହ୍ମବିଧୟେ ବାଶିଷ୍ଠାୟ ନମୋ ନମଃ ॥
ଅବିକାରାୟ ଶୁଦ୍ଧାୟ ନିତ୍ୟାୟ ପରମାତ୍ମନେ ।
ସଦୈକ ରୂପରୂପାୟ ବିଷ୍ଣବେ ପ୍ରଭବିଷ୍ଣବେ ॥
ଯସ୍ୟ ସ୍ମରଣମାତ୍ରେଣ ଜନ୍ମସଂସାରବନ୍ଧନାତ୍ ।
ବିମୁଚ୍ୟତେ ନମଃତସ୍ମୈ ବିଷ୍ଣବେ ପ୍ରଭବିଷ୍ଣବେ· ॥

ନମଃ ସମସ୍ତଭୂତାନାମାଦିଭୂତାୟ ଭୂଭୃତେ ।
ଅନେକରୂପରୂପାୟ ବିଷ୍ଣବେ ପ୍ରଭବିଷ୍ଣବେ ॥
ଓଁ ନମଃ ବିଷ୍ଣବେ ପ୍ରଭବିଷ୍ଣବେ ।

ବୈଶଂପାୟନ ଉବାଚ

ଶ୍ରୁତ୍ୱା ଧର୍ମାନଶେଷେଣ ପାବନାନି ଚ ସର୍ବଶଃ ।
ଯୁଧିଷ୍ଠିରଃ ଶାନ୍ତନବଂ ପୁନରେବାଭ୍ୟଭାଷତ ॥

ଯୁଧିଷ୍ଠିର ଉବାଚ

କିମେକଂ ଦୈବତଂ ଲୋକେ କିଂ ବାଽପ୍ୟେକଂ ପରାୟଣମ୍ ।
ସ୍ତୁବନ୍ତଃ କଂ କମର୍ଚ୍ଚନ୍ତଃ ପ୍ରାପ୍ନୁୟୁର୍ମାନବାଃ ଶୁଭମ୍ ॥
କୋ ଧର୍ମଃ ସର୍ବଧର୍ମାଣାଂ ଭବତଃ ପରମୋ ମତଃ ।
କିଂ ଜପନ୍ମୁଚ୍ୟତେ ଜନ୍ତୁର୍ଜନ୍ମସଂସାରବନ୍ଧନାତ୍ ॥

ଭୀଷ୍ମ ଉବାଚ

ଜଗତ୍ପ୍ରଭୁଂ ଦେବଦେବମନନ୍ତଂ ପୁରୁଷୋତ୍ତମମ୍ ।
ସ୍ତୁବନ୍ନାମସହସ୍ରେଣ ପୁରୁଷଃ ସତତୋତ୍ଥିତଃ ॥
ତମେବ ଚାର୍ଚ୍ଚୟନ୍ନିତ୍ୟଂ ଭକ୍ତ୍ୟା ପୁରୁଷମବ୍ୟୟମ୍ ।
ଧ୍ୟାୟନ୍ ସ୍ତୁବନ୍ନମସ୍ୟଂଶ୍ଚ ଯଜମାନସ୍ତମେବ ଚ ॥
ଅନାଦିନିଧନଂ ବିଷ୍ଣୁ ସର୍ବଲୋକମହେଶ୍ୱରମ୍ ।
ଲୋକାଧ୍ୟକ୍ଷଂ ସ୍ତୁବନ୍ନିତ୍ୟଂ ସର୍ବଦୁଃଖାତିଗୋ ଭବେତ୍ ॥
ବ୍ରହ୍ମଣ୍ୟଂ ସର୍ବଧର୍ମଜ୍ଞଂ ଲୋକାନାଂ କୀର୍ତ୍ତିବର୍ଦ୍ଧନମ୍ ।

ଲୋକନାଥଂ ମହଦ୍‌ଭୂତଂ ସର୍ବଭୂତଭବୋଦ୍‌ଭବମ୍ ॥
ଏଷ ମେ ସର୍ବଧର୍ମାଣାଂ ଧର୍ମୋଽଧିକତମୋ ମତଃ ।
ଯଦ୍‌ଭକ୍ତ୍ୟା ପୁଣ୍ଡରୀକାକ୍ଷଂ ସ୍ତବୈରର୍ଚ୍ଚେନ୍ନରଃ ସଦା ॥
ପରମଂ ଯୋ ମହତ୍ତେଜଃ ପରମଂ ଯୋ ମହତ୍ତପଃ ।
ପରମଂ ଯୋ ମହଦ୍‌ବ୍ରହ୍ମ ପରମଂ ଯଃ ପରାୟଣମ୍ ॥
ପବିତ୍ରାଣାଂ ପବିତ୍ରଂ ଯୋ ମଙ୍ଗଳାନାଂ ଚ ମଙ୍ଗଳମ୍ ।
ଦୈବତଂ ଦେବତାନାଂ ଚ ଭୂତାନାଂ ଯୋଽବ୍ୟୟଃ ପିତା ॥
ଯତଃ ସର୍ବାଣି ଭୂତାନି ଭବନ୍ତ୍ୟାଦିଯୁଗାଗମେ ।
ଯସ୍ମିଂଶ୍ଚ ପ୍ରଳୟଂ ଯାନ୍ତି ପୁନରେବ ଯୁଗକ୍ଷୟେ ॥
ତସ୍ୟ ଲୋକପ୍ରଧାନସ୍ୟ ଜଗନ୍ନାଥସ୍ୟ ଭୂପତେ ।
ବିଷ୍ଣୋର୍ନାମସହସ୍ରଂ ମେ ଶୃଣୁ ପାପଭୟାପହମ୍ ॥
ଯାନି ନାମାନି ଗୌଣାନି ବିଖ୍ୟାତାନି ମହାତ୍ମନଃ ।
ଋଷିଭିଃ ପରିଗୀତାନି ତାନି ବକ୍ଷ୍ୟାମି ଭୂତୟେ ॥

## ଧ୍ୟାନଂ

ଓଁ ଶାନ୍ତାକାରଂ ଭୁଜଗଶୟନଂ ପଦ୍ମନାଭଂ ସୁରେଶମ୍ ।
ବିଶ୍ୱାଧାରଂ ଗଗନସଦୃଶଂ ମେଘବର୍ଣ୍ଣଂ ଶୁଭାଙ୍ଗମ୍ ॥
ଲକ୍ଷ୍ମୀକାନ୍ତଂ କମଳନୟନଂ ଯୋଗୀଭିର୍ଧ୍ୟାନଗମ୍ୟମ୍ ।
ବନ୍ଦେ ବିଷ୍ଣୁଂ ଭବଭୟହରଂ ସର୍ବଲୋକୈକନାଥମ୍ ।

## ପ୍ରାର୍ଥନା

*ସଶଙ୍ଖଚକ୍ରଂ ସକିରୀଟକୁଣ୍ଡଳମ୍ ।*
*ସପୀତବସ୍ତ୍ରଂ ସରସୀରୁହେକ୍ଷଣମ୍ ॥*
*ସହାରବକ୍ଷଃସ୍ଥଳକୌସ୍ତୁଭଶ୍ରିୟଂ ।*
*ନମାମି ବିଷ୍ଣୁଂ ଶିରସା ଚତୁର୍ଭୁଜମ୍ ॥*

# ଶ୍ରୀବିଷ୍ଣୁସହସ୍ରନାମସ୍ତୋତ୍ରମ୍

ଓଁ ବିଶ୍ୱଂ ବିଷ୍ଣୁର୍ବଷଟ୍‌କାରୋ ଭୂତଭବ୍ୟଭବତ୍‌ପ୍ରଭୁଃ ।
ଭୂତକୃଦ୍‌ଭୂତଭୃଦ୍‌ଭାବୋ ଭୂତାତ୍ମା ଭୂତଭାବନଃ ।୧।
ପୂତାତ୍ମା ପରମାତ୍ମା ଚ ମୁକ୍ତାନାଂ ପରମା ଗତିଃ ।
ଅବ୍ୟୟଃ ପୁରୁଷଃ ସାକ୍ଷୀ କ୍ଷେତ୍ରଜ୍ଞୋଽକ୍ଷର ଏବ ଚ ।୨।
ଯୋଗୋ ଯୋଗବିଦାଂ ନେତା ପ୍ରଧାନପୁରୁଷେଶ୍ୱରଃ ।
ନାରସିଂହବପୁଃ ଶ୍ରୀମାନ୍ କେଶବଃ ପୁରୁଷୋତ୍ତମଃ ।୩।
ସର୍ବଃ ଶର୍ବଃ ଶିବଃ ସ୍ଥାଣୁର୍ଭୂତାଦିର୍ନିଧିରବ୍ୟୟଃ ।
ସଂଭବୋ ଭାବନୋ ଭର୍ତ୍ତା ପ୍ରଭବଃ ପ୍ରଭୁରୀଶ୍ୱରଃ ।୪।
ସ୍ୱୟଂଭୂଃ ଶମ୍ଭୁରାଦିତ୍ୟଃ ପୁଷ୍କରାକ୍ଷୋ ମହାସ୍ୱନଃ ।
ଅନାଦିନିଧନୋ ଧାତା ବିଧାତା ଧାତୁରୁତ୍ତମଃ ।୫।
ଅପ୍ରମେୟୋ ହୃଷୀକେଶଃ ପଦ୍ମନାଭୋଽମରପ୍ରଭୁଃ ।
ବିଶ୍ୱକର୍ମା ମନୁସ୍ତ୍ୱଷ୍ଟା ସ୍ଥବିଷ୍ଠଃ ସ୍ଥବିରୋ ଧ୍ରୁବଃ ।୬।

ଅଗ୍ରାହ୍ୟଃ ଶାଶ୍ୱତଃ କୃଷ୍ଣୋ ଲୋହିତାକ୍ଷଃ ପ୍ରତର୍ଦ୍ଦନଃ ।
ପ୍ରଭୂତସ୍ତ୍ରିକକୁବ୍‌ଧାମ ପବିତ୍ରଂ ମଙ୍ଗଳଂ ପରମ୍ ।୭।
ଈଶାନଃ ପ୍ରାଣଦଃ ପ୍ରାଣୋ ଜ୍ୟେଷ୍ଠଃ ଶ୍ରେଷ୍ଠଃ ପ୍ରଜାପତିଃ ।
ହିରଣ୍ୟଗର୍ଭୋ ଭୂଗର୍ଭୋ ମାଧବୋ ମଧୁସୂଦନଃ ।୮।
ଈଶ୍ୱରୋ ବିକ୍ରମୀ ଧନ୍ୱୀ ମେଧାବୀ ବିକ୍ରମଃ କ୍ରମଃ ।
ଅନୁତ୍ତମୋ ଦୁରାଧର୍ଷଃ କୃତଜ୍ଞଃ କୃତିରାତ୍ମବାନ୍ ।୯।
ସୁରେଶଃ ଶରଣଂ ଶର୍ମ ବିଶ୍ୱରେତାଃ ପ୍ରଜାଭବଃ ।
ଅହଃ ସଂବତ୍ସରୋ ବ୍ୟାଳଃ ପ୍ରତ୍ୟୟଃ ସର୍ବଦର୍ଶନଃ ।୧୦।
ଅଜଃ ସର୍ବେଶ୍ୱରଃ ସିଦ୍ଧଃ ସିଦ୍ଧିଃ ସର୍ବାଦିରଚ୍ୟୁତଃ ।
ବୃଷାକପିରମେୟାତ୍ମା ସର୍ବଯୋଗବିନିଃସୃତଃ ।୧୧।
ବସୁର୍ବସୁମନାଃ ସତ୍ୟଃ ସମାତ୍ମା ସଂମିତଃ ସମଃ ।
ଅମୋଘଃ ପୁଣ୍ଡରୀକାକ୍ଷୋ ବୃଷକର୍ମା ବୃଷାକୃତିଃ ।୧୨।
ରୁଦ୍ରୋ ବହୁଶିରା ବଭ୍ରୁର୍ବିଶ୍ୱଯୋନିଃ ଶୁଚିଶ୍ରବାଃ ।
ଅମୃତଃ ଶାଶ୍ୱତ ସ୍ଥାଣୁର୍ବରାରୋହୋ ମହାତପାଃ ।୧୩।
ସର୍ବଗଃ ସର୍ବବିଦ୍‌ଭାନୁର୍ବିଷ୍ୱକ୍‌ସେନୋ ଜନାର୍ଦ୍ଦନଃ ।
ବେଦୋ ବେଦବିଦବ୍ୟଙ୍ଗୋ ବେଦାଙ୍ଗୋ ବେଦବିତ୍ କବିଃ ।।
ଲୋକାଧ୍ୟକ୍ଷଃ ସୁରାଧ୍ୟକ୍ଷୋ ଧର୍ମାଧ୍ୟକ୍ଷଃ କୃତାକୃତଃ ।
ଚତୁରାତ୍ମା ଚତୁର୍ବ୍ୟୂହଶ୍ଚତୁର୍ଦଂଷ୍ଟ୍ରଶ୍ଚତୁର୍ଭୁଜଃ ।୧୫।
ଭ୍ରାଜିଷ୍ଣୁର୍ଭୋଜନଂ ଭୋକ୍ତା ସହିଷ୍ଣୁର୍ଜଗଦାଦିଜଃ ।
ଅନଘୋ ବିଜୟୋ ଜେତା ବିଶ୍ୱଯୋନିଃ ପୁନର୍ବସୁଃ ।୧୬।

ଉପେନ୍ଦ୍ରୋ ବାମନଃ ପ୍ରାଂଶୁରମୋଘଃ ଶୁଚିରୂର୍ଜିତଃ ।
ଅତୀନ୍ଦ୍ରଃ ସଂଗ୍ରହଃ ସର୍ଗୋ ଧୃତାତ୍ମା ନିୟମୋ ଯମଃ ।୧୭।
ବେଦ୍ୟୋ ବୈଦ୍ୟଃ ସଦାଯୋଗୀ ବୀରହା ମାଧବୋ ମଧୁଃ ।
ଅତୀନ୍ଦ୍ରିୟୋ ମହାମାୟୋ ମହୋତ୍ସାହୋ ମହାବଳଃ ।୧୮।
ମହାବୁଦ୍ଧିର୍ମହାବୀର୍ଯ୍ୟୋ ମହାଶକ୍ତିର୍ମହାଦ୍ୟୁତିଃ ।
ଅନିର୍ଦ୍ଦେଶ୍ୟବପୁଃ ଶ୍ରୀମାନମେୟାତ୍ମା ମହାଦ୍ରିଧୃକ୍ ।୧୯।
ମହେଷ୍ୱାସୋ ମହୀଭର୍ତ୍ତା ଶ୍ରୀନିବାସଃ ସତାଂ ଗତିଃ ।
ଅନିରୁଦ୍ଧଃ ସୁରାନନ୍ଦୋ ଗୋବିନ୍ଦୋ ଗୋବିଦାଂ ପତିଃ ।୨୦।
ମରୀଚିର୍ଦ୍ଦମନୋ ହଂସଃ ସୁପର୍ଣ୍ଣୋ ଭୁଜଗୋତ୍ତମଃ ।
ହିରଣ୍ୟନାଭଃ ସୁତପାଃ ପଦ୍ମନାଭଃ ପ୍ରଜାପତିଃ ।୨୧।
ଅମୃତ୍ୟୁଃ ସର୍ବଦୃକ୍ ସିଂହଃ ସନ୍ଧାତା ସନ୍ଧିମାନ୍‌ସ୍ଥିରଃ ।
ଅଜୋ ଦୁର୍ମର୍ଷଣଃ ଶାସ୍ତା ବିଶ୍ରୁତାତ୍ମା ସୁରାରିହା ।୨୨।
ଗୁରୁର୍ଗୁରୁତମୋ ଧାମ ସତ୍ୟଃ ସତ୍ୟପରାକ୍ରମଃ ।
ନିମିଷୋଽନିମିଷଃ ସ୍ରଗ୍‌ବୀ ବାଚସ୍ପତିରୁଦାରଧୀଃ ।୨୩।
ଅଗ୍ରଣୀର୍ଗ୍ରାମଣୀଃ ଶ୍ରୀମାନ୍‌ନ୍ୟାୟୋ ନେତା ସମୀରଣଃ ।
ସହସ୍ରମୂର୍ଦ୍ଧା ବିଶ୍ୱାତ୍ମା ସହସ୍ରାକ୍ଷଃ ସହସ୍ରପାତ୍ ।୨୪।
ଆବର୍ତ୍ତନୋ ନିବୃତ୍ତାତ୍ମା ସଂବୃତଃ ସଂପ୍ରମର୍ଦ୍ଦନଃ ।
ଅହଃ ସଂବର୍ତ୍ତକୋ ବହ୍ନିରନିଳୋ ଧରଣୀଧରଃ ।୨୫।
ସୁପ୍ରସାଦଃ ପ୍ରସନ୍ନାତ୍ମା ବିଶ୍ୱଧୃଗ୍ ବିଶ୍ୱଭୁଗ୍ ବିଭୁଃ ।
ସତ୍‌କର୍ତ୍ତା ସତ୍‌କୃତଃ ସାଧୁର୍ଜହ୍ନୁର୍ନାରାୟଣୋ ନରଃ ।୨୬।

ଅସଂଖ୍ୟେୟୋଽପ୍ରମେୟାତ୍ମା ବିଶିଷ୍ଟଃ ଶିଷ୍ଟକୃଚ୍ଛୁଚିଃ ।
ସିଦ୍ଧାର୍ଥଃ ସିଦ୍ଧସଂକଳ୍ପଃ ସିଦ୍ଧିଦଃ ସିଦ୍ଧିସାଧନଃ ।୧୨୭।
ବୃଷାହୀ ବୃଷଭୋ ବିଷ୍ଣୁର୍ବୃଷପର୍ବା ବୃଷୋଦରଃ ।
ବର୍ଦ୍ଧନୋ ବର୍ଦ୍ଧମାନଶ୍ଚ ବିବିକ୍ତଃ ଶ୍ରୁତିସାଗରଃ ।୧୨୮।
ସୁଭୁଜୋ ଦୁର୍ଦ୍ଧରୋ ବାଗ୍ମୀ ମହେନ୍ଦ୍ରୋ ବସୁଦୋ ବସୁଃ ।
ନୈକରୂପୋ ବୃହଦ୍ରୂପଃ ଶିପିବିଷ୍ଟଃ ପ୍ରକାଶନଃ ।୧୨୯।
ଓଜସ୍ତେଜୋଦ୍ୟୁତିଧରଃ ପ୍ରକାଶାତ୍ମା ପ୍ରତାପନଃ ।
ଋଦ୍ଧଃ ସ୍ପଷ୍ଟାକ୍ଷରୋ ମନ୍ତ୍ରଶ୍ଚନ୍ଦ୍ରାଂଶୁର୍ଭାସ୍କରଦ୍ୟୁତିଃ ।୧୩୦।
ଅମୃତାଂଶୂଦ୍ଭବୋ ଭାନୁଃ ଶଶବିନ୍ଦୁଃ ସୁରେଶ୍ୱରଃ ।
ଔଷଧଂ ଜଗତଃ ସେତୁଃ ସତ୍ୟଧର୍ମପରାକ୍ରମଃ ।୧୩୧।
ଭୂତଭବ୍ୟଭବନ୍ନାଥଃ ପବନଃ ପାବନୋଽନଳଃ ।
କାମହା କାମକୃତ୍କାନ୍ତଃ କାମଃ କାମପ୍ରଦଃ ପ୍ରଭୁଃ ।୧୩୨।
ଯୁଗାଦିକୃଦ୍ ଯୁଗାବର୍ତ୍ତୋ ନୈକମାୟୋ ମହାଶନଃ ।
ଅଦୃଶ୍ୟୋଽବ୍ୟକ୍ତରୂପଶ୍ଚ ସହସ୍ରଜିଦନନ୍ତଜିତ୍ ।୧୩୩।
ଇଷ୍ଟୋଽବିଶିଷ୍ଟଃ ଶିଷ୍ଟେଷ୍ଟଃ ଶିଖଣ୍ଡୀ ନହୁଷୋ ବୃଷଃ ।
କ୍ରୋଧହା କ୍ରୋଧକୃତ୍କର୍ତ୍ତା ବିଶ୍ୱବାହୁର୍ମହୀଧରଃ ।୧୩୪।
ଅଚ୍ୟୁତଃ ପ୍ରଥିତଃ ପ୍ରାଣଃ ପ୍ରାଣଦୋ ବାସବାନୁଜଃ ।
ଅପାଂ ନିଧିରଧିଷ୍ଠାନମପ୍ରମତ୍ତଃ ପ୍ରତିଷ୍ଠିତଃ ।୧୩୫।
ସ୍କନ୍ଦଃ ସ୍କନ୍ଦଧରୋ ଧୁର୍ଯ୍ୟୋ ବରଦୋ ବାୟୁବାହନଃ ।
ବାସୁଦେବୋ ବୃହଦ୍ଭାନୁରାଦିଦେବଃ ପୁରନ୍ଦରଃ ।୧୩୬।

ଅଶୋକସ୍ତାରଣସ୍ତାରଃ ଶୂରଃ ଶୌରିର୍ଜନେଶ୍ୱରଃ ।
ଅନୁକୂଳଃ ଶତାବର୍ତ୍ତଃ ପଦ୍ମୀ ପଦ୍ମନିଭେକ୍ଷଣଃ ।୩୭।
ପଦ୍ମନାଭୋଽରବିନ୍ଦାକ୍ଷଃ ପଦ୍ମଗର୍ଭଃ ଶରୀରଭୃତ୍ ।
ମହର୍ଦ୍ଧିରଦ୍ଧୋ ବୃଦ୍ଧାତ୍ମା ମହାକ୍ଷୋ ଗରୁଡ଼ଧ୍ୱଜଃ ।୩୮।
ଅତୁଳଃ ଶରଭୋ ଭୀମଃ ସମୟଜ୍ଞୋ ହବିର୍ହରିଃ ।
ସର୍ବଲକ୍ଷଣଲକ୍ଷଣ୍ୟୋ ଲକ୍ଷ୍ମୀବାନ୍ ସମିତିଂଜୟଃ ।୩୯।
ବିକ୍ଷରୋ ରୋହିତୋ ମାର୍ଗୋ ହେତୁର୍ଦ୍ଦାମୋଦରଃ ସହଃ ।
ମହୀଧରୋ ମହାଭାଗୋ ବେଗବାନମିତାଶନଃ ।୪୦।
ଉଦ୍‌ଭବଃ କ୍ଷୋଭଣୋ ଦେବଃ ଶ୍ରୀଗର୍ଭଃ ପରମେଶ୍ୱର ।
କରଣଂ କାରଣଂ କର୍ତ୍ତା ବିକର୍ତ୍ତା ଗହନୋ ଗୁହଃ ।୪୧।
ବ୍ୟବସାୟୋ ବ୍ୟବସ୍ଥାନଃ ସଂସ୍ଥାନଃ ସ୍ଥାନଦୋ ଧ୍ରୁବଃ ।
ପରର୍ଦ୍ଧିଃ ପରମସ୍ପଷ୍ଟସ୍ତୁଷ୍ଟଃ ପୁଷ୍ଟଃ ଶୁଭେକ୍ଷଣଃ ।୪୨।
ରାମୋ ବିରାମୋ ବିରତୋ ମାର୍ଗୋ ନେୟୋ ନୟୋଽନୟଃ ।
ବୀରଃ ଶକ୍ତିମତାଂ ଶ୍ରେଷ୍ଠୋ ଧର୍ମୋ ଧର୍ମବିଦୁତ୍ତମଃ ।୪୩।
ବୈକୁଣ୍ଠଃ ପୁରୁଷଃ ପ୍ରାଣଃ ପ୍ରାଣଦଃ ପ୍ରଣବଃ ପୃଥୁଃ ।
ହିରଣ୍ୟଗର୍ଭଃ ଶତ୍ରୁଘ୍ନୋ ବ୍ୟାପ୍ତୋ ବାୟୁରଧୋକ୍ଷଜଃ ।୪୪।
ଋତୁଃ ସୁଦର୍ଶନଃ କାଳଃ ପରମେଷ୍ଠୀ ପରିଗ୍ରହଃ ।
ଉଗ୍ରଃ ସଂବତ୍ସରୋ ଦକ୍ଷୋ ବିଶ୍ରାମୋ ବିଶ୍ୱଦକ୍ଷିଣଃ ।୪୫।
ବିସ୍ତାରଃ ସ୍ଥାବରସ୍ଥାଣୁଃ ପ୍ରମାଣଂ ବୀଜମବ୍ୟୟମ୍ ।
ଅର୍ଥୋଽନର୍ଥୋ ମହାକୋଶୋ ମହାଭୋଗୋ ମହାଧନଃ ॥

ଅନିର୍ବିଣ୍ଣଃ ସ୍ଥବିଷ୍ଠୋଽଭୂର୍ଧର୍ମଯୂପୋ ମହାମଖଃ ।
ନକ୍ଷତ୍ରନେମିର୍ନକ୍ଷତ୍ରୀ କ୍ଷମଃ କ୍ଷାମଃ ସମୀହନଃ ।୪୭।
ଯଜ୍ଞ ଇଜ୍ୟୋ ମହେଜ୍ୟଶ୍ଚ କ୍ରତୁଃ ସତ୍ରଂ ସତାଂ ଗତିଃ ।
ସର୍ବଦର୍ଶୀ ବିମୁକ୍ତାତ୍ମା ସର୍ବଜ୍ଞୋ ଜ୍ଞାନମୁତ୍ତମମ୍ ।୪୮।
ସୁବ୍ରତଃ ସୁମୁଖଃ ସୂକ୍ଷ୍ମଃ ସୁଘୋଷଃ ସୁଖଦଃ ସୁହୃତ୍ ।
ମନୋହରୋ ଜିତକ୍ରୋଧୋ ବୀରବାହୁର୍ବିଦାରଣଃ ।୪୯।
ସ୍ୱାପନଃ ସ୍ୱବଶୋ ବ୍ୟାପୀ ନୈକାତ୍ମା ନୈକକର୍ମକୃତ୍ ।
ବତ୍ସରୋ ବତ୍ସଳୋ ବତ୍ସୀ ରତ୍ନଗର୍ଭୋ ଧନେଶ୍ୱରଃ ।୫୦।
ଧର୍ମଗୁବ୍ ଧର୍ମକୃଦ୍ଧର୍ମୀ ସଦସତ୍କ୍ଷରମକ୍ଷରମ୍ ।
ଅବିଜ୍ଞାତା ସହସ୍ରାଂଶୁର୍ବିଧାତା କୃତଲକ୍ଷଣଃ ।୫୧
ଗଭସ୍ତିନେମିଃ ସତ୍ତ୍ୱସ୍ଥ ସିଂହୋ ଭୂତମହେଶ୍ୱରଃ ।
ଆଦିଦେବୋ ମହାଦେବୋ ଦେବେଶୋ ଦେବଭୃଦ୍ ଗୁରୁଃ ॥
ଉତ୍ତରୋ ଗୋପତିର୍ଗୋପ୍ତା ଜ୍ଞାନଗମ୍ୟଃ ପୁରାତନଃ ।
ଶରୀରଭୂତଭୃଦ୍ ଭୋକ୍ତା କପୀନ୍ଦ୍ରୋ ଭୂରିଦକ୍ଷିଣଃ ।୫୩।
ସୋମପୋଽମୃତପଃ ସୋମଃ ପୁରୁଜିଦ୍ ପୁରୁଷତ୍ତମଃ ।
ବିନୟୋ ଜୟଃ ସତ୍ୟସଂଧୋ ଦାଶାର୍ହଃ ସାତ୍ୱତାଂପତିଃ ॥
ଜୀବୋ ବିନୟିତା ସାକ୍ଷୀ ମୁକୁନ୍ଦୋଽମିତବିକ୍ରମଃ ।
ଅମ୍ଭୋନିଧିରନନ୍ତାତ୍ମା ମହୋଦଧିଶୟୋଽନ୍ତକଃ ।୫୫।
ଅଜୋ ମହାର୍ହଃ ସ୍ୱାଭାବ୍ୟୋ ଜିତାମିତ୍ରଃ ପ୍ରମୋଦନଃ ।
ଆନନ୍ଦୋ ନନ୍ଦନୋ ନନ୍ଦଃ ସତ୍ୟଧର୍ମା ତ୍ରିବିକ୍ରମଃ ।୫୬।

ମହର୍ଷିଃ କପିଲାଗ୍ରର୍ଯ୍ୟଃ କୃତଜ୍ଞୋ ମେଦିନୀପତିଃ ।
ତ୍ରିପଦସ୍ତ୍ରିଦଶାଧ୍ୟକ୍ଷୋ ମହାଶୃଙ୍ଗଃ କୃତାନ୍ତକୃତ୍ ।୫୭ ।
ମହାବରାହୋ ଗୋବିନ୍ଦଃ ସୁଷେଣଃ କନକାଙ୍ଗଦୀ ।
ଗୁହ୍ୟୋ ଗଭୀରୋ ଗହନୋ ଗୁପ୍ତଶ୍ଚକ୍ରଗଦାଧରଃ ।୫୮ ।
ବେଧାଃ ସ୍ୱାଙ୍ଗୋଽଜିତଃ କୃଷ୍ଣୋ ଦୃଢ଼ଃ ସଂକର୍ଷଣୋଽଚ୍ୟୁତଃ ।
ବରୁଣୋ ବାରୁଣୋ ବୃକ୍ଷଃ ପୁଷ୍କରାକ୍ଷୋ ମହାମନାଃ ।୫୯ ।
ଭଗବାନ୍ ଭଗହାନନ୍ଦୀ ବନମାଳୀ ହଳାୟୁଧଃ ।
ଆଦିତ୍ୟୋ ଜ୍ୟୋତିରାଦିତ୍ୟଃ ସହିଷ୍ଣୁର୍ଗତିସତ୍ତମଃ ।୬୦ ।
ସୁଧନ୍ୱା ଖଣ୍ଡପରଶୁର୍ଦାରୁଣୋ ଦ୍ରବିଣପ୍ରଦଃ ।
ଦିବଃସ୍ପୃକ୍ ସର୍ବଦୃଗ୍ ବ୍ୟାସୋ ବାଚସ୍ପତିରଯୋନିଜଃ ॥
ତ୍ରିସାମା ସାମଗଃ ସାମ ନିର୍ବାଣଂ ଭେଷଜଂ ଭିଷକ୍ ।
ସଂନ୍ୟାସକୃଚ୍ଛମଃ ଶାନ୍ତୋ ନିଷ୍ଠା ଶାନ୍ତିଃ ପରାୟଣମ୍ ।୬୨ ।
ଶୁଭାଙ୍ଗଃ ଶାନ୍ତିଦଃ ସ୍ରଷ୍ଟା କୁମୁଦଃ କୁବଳେଶୟଃ ।
ଗୋହିତୋ ଗୋପତିର୍ଗୋପ୍ତା ବୃଷଭାକ୍ଷୋ ବୃଷପ୍ରିୟଃ ।୬୩ ।
ଅନିବର୍ତ୍ତୀ ନିବୃତ୍ତାତ୍ମା ସଂକ୍ଷେପ୍ତା କ୍ଷେମକୃଚ୍ଛିବଃ ।
ଶ୍ରୀବତ୍ସବକ୍ଷାଃ ଶ୍ରୀବାସଃ ଶ୍ରୀପତିଃ ଶ୍ରୀମତାଂ ବରଃ ।୬୪ ।
ଶ୍ରୀଦଃ ଶ୍ରୀଶଃ ଶ୍ରୀନିବାସଃ ଶ୍ରୀନିଧିଃ ଶ୍ରୀବିଭାବନଃ ।
ଶ୍ରୀଧରଃ ଶ୍ରୀକରଃ ଶ୍ରେୟଃ ଶ୍ରୀମାଂଲ୍ଲୋକତ୍ରୟାଶ୍ରୟଃ ।୬୫ ।
ସ୍ୱକ୍ଷଃ ସ୍ୱଙ୍ଗଃ ଶତାନନ୍ଦୋ ନନ୍ଦିର୍ଜ୍ୟୋତିର୍ଗଣେଶ୍ୱରଃ ।
ବିଜିତାତ୍ମା ବିଧେୟାତ୍ମା ସତ୍କୀର୍ତ୍ତିଚ୍ଛିନ୍ନସଂଶୟଃ ।୬୬ ।

ଉଦୀର୍ଣ୍ଣଃ ସର୍ବତଶ୍ଚକ୍ଷୁରନୀଶଃ ଶାଶ୍ୱତସ୍ଥିରଃ ।
ଭୂଶୟୋ ଭୂଷଣୋ ଭୂତିର୍ବିଶୋକଃ ଶୋକନାଶନଃ ।୬୭।
ଅର୍ଚ୍ଚିଷ୍ମାନର୍ଚ୍ଚିତଃ କୁମ୍ଭୋ ବିଶୁଦ୍ଧାତ୍ମା ବିଶୋଧନଃ ।
ଅନିରୁଦ୍ଧୋଽପ୍ରତିରଥଃ ପ୍ରଦ୍ୟୁମ୍ନୋଽମିତବିକ୍ରମଃ ।୬୮।
କାଳନେମିନିହା ବୀରଃ ଶୌରିଃ ଶୂରଜନେଶ୍ୱରଃ ।
ତ୍ରିଲୋକାତ୍ମା ତ୍ରିଲୋକେଶଃ କେଶବଃ କେଶିହା ହରିଃ ॥
କାମଦେବଃ କାମପାଳଃ କାମୀ କାନ୍ତଃ କୃତାଗମଃ ।
ଅନିର୍ଦ୍ଦେଶ୍ୟବପୁର୍ବିଷ୍ଣୁର୍ବୀରୋଽନନ୍ତୋ ଧନଞ୍ଜୟଃ ।୭୦।
ବ୍ରହ୍ମଣ୍ୟୋ ବ୍ରହ୍ମକୃଦ୍ ବ୍ରହ୍ମା ବ୍ରହ୍ମ ବ୍ରହ୍ମବିବର୍ଦ୍ଧନଃ ।
ବ୍ରହ୍ମବିଦ୍ ବ୍ରାହ୍ମଣୋ ବ୍ରହ୍ମୀ ବ୍ରହ୍ମଜ୍ଞୋ ବ୍ରାହ୍ମଣପ୍ରିୟଃ ।୭୧।
ମହାକ୍ରମୋ ମହାକର୍ମା ମହାତେଜା ମହୋରଗଃ ।
ମହାକ୍ରତୁର୍ମହାଯଜ୍ୱା ମହାଯଜ୍ଞୋ ମହାହବିଃ ।୭୨।
ସ୍ତବ୍ୟ ସ୍ତବପ୍ରିୟଃ ସ୍ତୋତ୍ରଂ ସ୍ତୁତିଃ ସ୍ତୋତା ରଣପ୍ରିୟଃ ।
ପୂର୍ଣ୍ଣଃ ପୂରୟିତା ପୁଣ୍ୟଃ ପୁଣ୍ୟକୀର୍ତ୍ତିରନାମୟଃ ।୭୩।
ମନୋଜବସ୍ତୀର୍ଥକରୋ ବସୁରେତା ବସୁପ୍ରଦଃ ।
ବସୁପ୍ରଦୋ ବାସୁଦେବୋ ବସୁର୍ବସୁମନା ହବିଃ ।୭୪।
ସଦ୍‌ଗତିଃ ସଦ୍‌କୃତିଃ ସତ୍ତା ସଦ୍‌ଭୂତିଃ ସତ୍‌ପରାୟଣଃ ।
ଶୂରସେନୋ ଯଦୁଶ୍ରେଷ୍ଠଃ ସନ୍ନିବାସଃ ସୁଯାମୁନଃ ।୭୫।
ଭୂତାବାସୋ ବାସୁଦେବୋ ସର୍ବାସୁନିଲୟୋଽନଳଃ ।
ଦର୍ପହା ଦର୍ପଦୋ ଦୃପ୍ତୋ ଦୁର୍ଦ୍ଧରୋଽଥାପରାଜିତଃ ।୭୬।

ବିଶ୍ୱମୂର୍ତ୍ତିର୍ମହାମୂର୍ତ୍ତି ଦୀପ୍ତମୂର୍ତ୍ତିରମୂର୍ତ୍ତିମାନ୍ ।
ଅନେକମୂର୍ତ୍ତିରବ୍ୟକ୍ତଃ ଶତମୂର୍ତ୍ତିଃ ଶତାନନଃ ।୭୭ ।
ଏକୋ ନୈକଃ ସବଃ କଃ କିଂ ଯତ୍ତତ୍ ପଦମନୁତ୍ତମମ୍ ।
ଲୋକବନ୍ଧୁର୍ଲୋକନାଥୋ ମାଧବୋ ଭକ୍ତବତ୍ସଳଃ ।୭୮ ।
ସୁବର୍ଣ୍ଣବର୍ଣ୍ଣୋଃ ହେମାଙ୍ଗୋ ବରାଙ୍ଗଶ୍ଚନ୍ଦନାଙ୍ଗଦୀ ।
ବୀରହା ବିଷମଃ ଶୂନ୍ୟୋ ଘୃତାଶୀରଚଳଶ୍ଚଳଃ ।୭୯ ।
ଅମାନୀ ମାନଦୋ ମାନ୍ୟୋ ଲୋକସ୍ୱାମୀ ତ୍ରିଲୋକଧୃକ୍ ।
ସୁମେଧା ମେଧଜୋ ଧନ୍ୟଃ ସତ୍ୟମେଧା ଧରାଧରଃ ।୮୦ ।
ତେଜୋବୃଷୋ ଦ୍ୟୁତିଧରଃ ସର୍ବଶସ୍ତ୍ରଭୃତାଂ ବରଃ ।
ପ୍ରଗ୍ରହୋ ନିଗ୍ରହୋ ବ୍ୟଗ୍ରୋ ନୈକଶୃଙ୍ଗୋ ଗଦାଗ୍ରଜଃ ।୮୧ ।
ଚତୁର୍ମୂର୍ତ୍ତିଶ୍ଚତୁର୍ବାହୁଶ୍ଚତୁର୍ବ୍ୟୂହଶ୍ଚତୁର୍ଗତିଃ ।
ଚତୁରାତ୍ମା ଚତୁର୍ଭାବଶ୍ଚତୁର୍ବେଦବିଦେକପାତ୍ ।୮୨ ।
ସମାବର୍ତ୍ତୋଽନିବୃତ୍ତାତ୍ମା ଦୁର୍ଜୟୋ ଦୁରତିକ୍ରମଃ ।
ଦୁର୍ଲ୍ଲଭୋ ଦୁର୍ଗମୋ ଦୁର୍ଗୋ ଦୁରାବାସୋ ଦୁରାରିହା ।୮୩ ।
ଶୁଭାଙ୍ଗୋ ଲୋକସାରଙ୍ଗଃ ସୁତନ୍ତୁସ୍ତନ୍ତୁବର୍ଦ୍ଧନଃ ।
ଅର୍କୋ ବାଜସନଃ ଶୃଙ୍ଗୀ ଜୟନ୍ତଃ ସର୍ବବିଜ୍ଜୟୀ ।୮୪ ।
ସୁବର୍ଣ୍ଣବିନ୍ଦୁରକ୍ଷୋଭ୍ୟଃ ସର୍ବବାଗୀଶ୍ୱରେଶ୍ୱରଃ ।
ମହାହ୍ରଦୋ ମହାଗର୍ତ୍ତୋ ମହାଭୂତୋ ମହାନିଧିଃ ।୮୫ ।
କୁମୁଦଃ କୁନ୍ଦରଃ କୁନ୍ଦଃ ପର୍ଜନ୍ୟଃ ପାବନୋଽନିଳଃ ।
ଅମୃତାଶୋଽମୃତବପୁଃ ସର୍ବଜ୍ଞଃ ସର୍ବତୋମୁଖଃ ।୮୬ ।

ସୁଲଭଃ ସୁବ୍ରତଃ ସିଦ୍ଧଃ ଶତ୍ରୁଜିଚ୍ଛତ୍ରୁତାପନଃ ।
ନ୍ୟଗ୍ରୋଧୋଦୁମ୍ବରୋଽଶ୍ୱତ୍ଥ ଶ୍ଚାଣୁରାନ୍ଧ୍ରନିଷୂଦନଃ ।୮୭।
ସହସ୍ରାର୍ଚ୍ଚିଃ ସପ୍ତଜିହ୍ୱଃ ସପ୍ତୈଧାଃ ସପ୍ତବାହନଃ ।
ଅମୂର୍ତ୍ତିରନଘୋଽଚିନ୍ତ୍ୟୋ ଭୟକୃଦ୍‌ଭୟନାଶନଃ ।୮୮।
ଅଣୁର୍ବୃହତ୍ କୃଶଃ ସ୍ଥୂଳୋ ଗୁଣଭୃନ୍ନିର୍ଗୁଣୋ ମହାନ୍ ।
ଅଧୃତଃ ସ୍ୱଧୃତଃ ସ୍ୱାସ୍ୟଃ ପ୍ରାଗ୍ ବଂଶୋ ବଂଶବର୍ଦ୍ଧନଃ ॥
ଭାରଭୃତ୍ କଥିତୋ ଯୋଗୀ ଯୋଗୀଶଃ ସର୍ବକାମଦଃ ।
ଆଶ୍ରମଃ ଶ୍ରମଣଃ କ୍ଷାମଃ ସୁପର୍ଣ୍ଣୋ ବାୟୁବାହନଃ ।୯୦।
ଧନୁର୍ଦ୍ଧରୋ ଧନୁର୍ବେଦୋ ଦଣ୍ଡୋ ଦମୟିତା ଦମଃ ।
ଅପରାଜିତଃ ସର୍ବସହୋ ନିୟନ୍ତାନିୟମୋଽଯମଃ ।୯୧।
ସତ୍ତ୍ୱବାନ୍ ସାତ୍ତ୍ୱିକଃ ସତ୍ୟଃ ସତ୍ୟଧର୍ମପରାୟଣଃ ।
ଅଭିପ୍ରାୟଃ ପ୍ରିୟାର୍ହୋଽର୍ହଃ ପ୍ରିୟକୃଦ୍ ପ୍ରୀତିବର୍ଦ୍ଧନଃ ।୯୨।
ବିହାୟସଗତିର୍ଜ୍ୟୋତିଃ ସୁରୁଚିର୍ହୁତଭୁଗ୍ ବିଭୁଃ ।
ରବିର୍ବିରୋଚନଃ ସୂର୍ଯ୍ୟଃ ସବିତା ରବିଲୋଚନଃ ।୯୩।
ଅନନ୍ତୋ ହୁତଭୁଗ୍‌ଭୋକ୍ତା ସୁଖଦୋ ନୈକଜୋଽଗ୍ରଜଃ ।
ଅନିର୍ବିଣ୍ଣଃ ସଦାମର୍ଷୀ ଲୋକାଧିଷ୍ଠାନମଦ୍‌ଭୁତଃ ।୯୪।
ସନାତ୍ ସନାତନତମଃ କପିଳଃ କପିରପ୍ୟୟଃ ।
ସ୍ୱସ୍ତିଦଃ ସ୍ୱସ୍ତିକୃତ୍ ସ୍ୱସ୍ତି ସ୍ୱସ୍ତିଭୁକ୍ ସ୍ୱସ୍ତିଦକ୍ଷିଣଃ ।୯୫।
ଅରୌଦ୍ରଃ କୁଣ୍ଡଳୀ ଚକ୍ରୀ ବିକ୍ରମ୍ୟୂର୍ଜ୍ଜିତଶାସନଃ ।
ଶବ୍‌ଦାତିଗଃ ଶବ୍‌ଦସହଃ ଶିଶିରଃ ଶର୍ବରୀକରଃ ।୯୬।

ଅକ୍ରୂରଃ ପେଶଳୋ ଦକ୍ଷୋ ଦକ୍ଷିଣଃ କ୍ଷମିଣାଂ ବରଃ ।
ବିଦ୍ୱତ୍ତମୋ ବୀତଭୟଃ ପୁଣ୍ୟଶ୍ରବଣକୀର୍ତ୍ତନଃ ।୯୭ ।
ଉତ୍ତାରଣୋ ଦୁଷ୍କୃତିହା ପୁଣ୍ୟୋ ଦୁଃସ୍ୱପ୍ନନାଶନଃ ।
ବୀରହା ରକ୍ଷଣଃ ସନ୍ତୋ ଜୀବନଃ ପର୍ଯ୍ୟବସ୍ଥିତଃ ।୯୮ ।
ଅନନ୍ତରୂପୋଽନନ୍ତଶ୍ରୀର୍ଜିତମନ୍ୟୁର୍ଭୟାପହଃ ।
ଚତୁରସ୍ରୋ ଗଭୀରାତ୍ମା ବିଦିଶୋ ବ୍ୟାଦିଶୋ ଦିଶଃ ।୯୯ ।
ଅନାଦିର୍ଭୂର୍ଭୁବୋ ଲକ୍ଷ୍ମୀଃ ସୁବୀରୋ ରୁଚିରାଙ୍ଗଦଃ ।
ଜନନୋ ଜନଜନ୍ମାଦିର୍ଭୀମୋ ଭୀମପରାକ୍ରମଃ ।୧୦୦ ।
ଆଧାରନିଲୟୋଽଧାତା ପୁଷ୍ପହାସଃ ପ୍ରଜାଗରଃ ।
ଊର୍ଦ୍ଧ୍ୱଗଃ ସତ୍ପଥାଚାରଃ ପ୍ରାଣଦଃ ପ୍ରଣବଃ ପଣଃ ।୧୦୧ ।
ପ୍ରମାଣଂ ପ୍ରାଣନିଲୟଃ ପ୍ରାଣଭୃତ୍ ପ୍ରାଣଜୀବନଃ ।
ତତ୍ତ୍ୱଂ ତତ୍ତ୍ୱବିଦେକାତ୍ମା ଜନ୍ମମୃତ୍ୟୁଜରାତିଗଃ ।୧୦୨ ।
ଭୂର୍ଭୁବଃସ୍ୱସ୍ତରୁସ୍ତାରଃ ସବିତା ପ୍ରପିତାମହଃ ।
ଯଜ୍ଞୋ ଯଜ୍ଞପତିର୍ଯ୍ୟଜ୍ୱା ଯଜ୍ଞାଙ୍ଗୋ ଯଜ୍ଞବାହନଃ ।୧୦୩ ।
ଯଜ୍ଞଭୃଦ୍ ଯଜ୍ଞକୃଦ୍ ଯଜ୍ଞୀ ଯଜ୍ଞଭୁଗ୍ ଯଜ୍ଞସାଧନଃ ।
ଯଜ୍ଞାନ୍ତକୃଦ୍ ଯଜ୍ଞଗୁହ୍ୟମନ୍ନମନ୍ନାଦ ଏବ ଚ ।୧୦୪ ।
ଆତ୍ମଯୋନିଃ ସ୍ୱୟଂଜାତୋ ବୈଖାନଃ ସାମଗାୟନଃ ।
ଦେବକୀନନ୍ଦନଃ ସ୍ରଷ୍ଟା କ୍ଷିତୀଶଃ ପାପନାଶନଃ ।୧୦୫ ।
ଶଙ୍ଖଭୃନ୍ନନ୍ଦକୀ ଚକ୍ରୀ ଶାର୍ଙ୍ଗଧନ୍ୱା ଗଦାଧରଃ ।
ରଥାଙ୍ଗପାଣିରକ୍ଷୋଭ୍ୟଃ ସର୍ବପ୍ରହରଣାୟୁଧଃ ।୧୦୬ ।

ସର୍ବପ୍ରହରଣାୟୁଧ ଓଁ ନମଃ ଇତି ।

ଯଇଦଂ କୀର୍ତ୍ତିନୀୟସ୍ୟ କେଶବସ୍ୟ ମହାତ୍ମନଃ ।
ନାମ୍ନାଂ ସହସ୍ରଂ ଦିବ୍ୟାନାମ ଶେଷେଣ ପରିକୀର୍ତ୍ତିୟେତ୍ ।।
କୃଷ୍ଣାୟ ବାସୁଦେବାୟ ଦେବକୀନନ୍ଦନାୟଚ ।
ନନ୍ଦଗୋପକୁମାରାୟ ଗୋବିନ୍ଦାୟ ନମୋନମଃ ।।

*ଓଁ ବନମାଳୀ ଗଦିଶର୍ଙ୍ଗୀ ଶଙ୍ଖି ଚକ୍ରୀ ଚ ନନ୍ଦକୀ ।*
*ଶ୍ରୀମାନ୍ ନାରାୟଣ ବିଷ୍ଣୁର୍ବାସୁଦେବୋଭିରକ୍ଷତୁ (୩ ଥର) ।।*
*ର୍ବାସୁଦେବୋଭିରକ୍ଷତୁ ଓଁ ନମଃ ଇତି ।*

# ଅଷ୍ଟ-ଗୁଜ୍ଜରୀ

ଓଁ

*ଅଚ୍ୟୁତଂ ଗୋଲୋକନାଥଂ ସାକ୍ଷାତ୍ ବିଷ୍ଣୁଂ ସ୍ୱରୂପକମ୍*
*କଳିଯୁଗେ ବିହରନ୍ତ ଅଷ୍ଟଗୁଜ୍ଜରୀ ପ୍ରକାଶିତମ୍ ।।*

(୧)

ଭାବବିନୋଦିଆ ଠାକୁର ଭକ୍ତବତ୍ସଳ ହରି ।
ଭକ୍ତଙ୍କ ପାଇଁ କଳେବର ଦଶ ମୂରତି ଧରି ।।
ଭକ୍ତ ତୁମ୍ଭର କି କରିବ ଭକ୍ତ ବୋଲରେ ଥାଅ ।
ଭକ୍ତ ପେଶିଲା ହସ୍ତିନାକୁ ଦୂତପଣରେ ଯାଅ ।।
ଭକ୍ତ ଦେଖାଇଲା ସ୍ତମ୍ଭକୁ ସ୍ତମ୍ଭୁ ହେଲ ଉଦିତ ।
ଭୃତ୍ୟର ଭୃତ୍ୟ ପରି ଭୃତ୍ୟ ଭଣେ ଦୀନ ଅଚ୍ୟୁତ ।।

(୨)

ବିଷୟାରସରେ ମଜ୍ଜିଲି ସାଧୁ ସଙ୍ଗକୁ ତେଜି ।
ତରୁଣୀତନୟା ତନୁକୁ ଦିବା ରଜନୀ ହେଜି ।।
ତୁମ୍ଭ ନାମ କାହୁଁ ଜାଣିବି ପ୍ରଭୁ ଜଗଜ୍ଜୀବନ ।
ପ୍ରକୃତି ମୋତେ ଭୁଲାଇଲା ସୁଧାରସ ଆପ୍ୟାନ ।।
ପତିତ-ପାବନ ବାନା ସେ ଯହୁଁ ଶୁଣିଲି ତୋର ।
ଦୀନ ଅଚ୍ୟୁତ ଯେ ଭଣଇ ତେଣୁ ଭରସା ମୋର ।।

(୩)

ଦୁର୍ଜନ ଲୋକଙ୍କୁ ଡରଇ ପିଠି ଯାତନା ଦେଇ ।
ନିରେଖ ହୋଇ ପଡ଼ିଅଛି ଭବ ସାଗରେ ମୁହିଁ ।।
ତୁମ୍ଭେ ଯେବେ କୃପା କରିବ ମୋତେ ଥିବ ଆବୋରି ।
କୃତାନ୍ତକ କିସ କରିବ ବୋଧ ଷଡ଼-ଅଇରି ।।
ପାଣ୍ଡବଙ୍କୁ ତୁମ୍ଭେ ରଖିଲ କି କଲେ କୁରୁପତି ।
ଯାହାକୁ ତୁମ୍ଭେ ଯେ ରଖିବ ଭଣେ ଦୀନ ଅଚ୍ୟୁତି ।।

(୪)

ତୁମ୍ଭର ଭୃତ୍ୟ କେ ହୋଇବ ଗୋଷ୍ଠମଣ୍ଡଳେ କହ ।
ସେ ମୋତେ ତୁମ୍ଭ ସମକକ୍ଷ ହୃଦେ କିନ୍ତୁ ନ ବହ ।।
ତୁମ୍ଭ ସେବା କାହୁଁ ଜାଣିବି ତୁମ୍ଭ ଭକ୍ତଙ୍କ ସେବା ।
ସେବାରେ ସୀମା ନ ଜାଣିଣ ହୁଡ଼ି ବୋଇଲି ଅବା ।।
ଶ୍ରୀବତ୍ସ ଅଙ୍କିତ ଏମାନେ ଯେଉଁ ଚରଣେ ନିତି ।
ରୁଦ୍ର ପଦ୍ମଯୋନି ଭଜନ୍ତି ଭଣେ ଦୀନ ଅଚ୍ୟୁତି ।।

(୫)

ମାୟାଜାଲ ତୋପେ ପଡ଼ିଲି ଦିଗ ନ ଦିଶେ କୂଳ ।
ଭ୍ରାତା ବନ୍ଧୁ କିସ କରିବେ ମୋତେ ନୋହିଲା ସଳ ।।
ରଖିଲେ ରଖ ଜଗନ୍ନାଥ ଆଉ ନାହିଁ ରଖନ୍ତା ।
ତୁମ୍ଭେ ନ ରଖିଲେ ଭାସିଲି ଶୁଣି ହୁଅ ଅଚିନ୍ତା ।।

ଶ୍ରୀବତ୍ସ ବୋଲି ଏକ ଦ୍ୱିଜ ହୃଦେ ମାଇଲା ନାତ ।
ତୁମ୍ଭେ ହୃଷ୍ଟ ହୋଇ ହସିଲ ତୁମ୍ଭ ମହିମା ଅନ୍ତ ।।
ରାଜୁସି ସଭା ଯଜ୍ଞଶାଳେ ବେତଧରି ଖୁଣ୍ଟିଆ ।
ଭୃତ୍ୟକୁ ନୃପତି କରାଅ ପ୍ରଭୁ ଏଡ଼େ ହଟିଆ ।।
ବ୍ୟାଧ ଅଜାମିଳ ଗଣିକା ତାଙ୍କୁ ଦେଲ ସୁଗତି ।
ତୁମ୍ଭେ ଯେ ପତିତ ପାବନ ଭଣେ ଦୀନ ଅଚ୍ୟୁତି ।।

(୬)

ତୁମ୍ଭ ଛାମୁରେ ଜଣାଉଛି ଗୁରୁ ସନ୍ଦେହ କଥା ।
କେ ଗୁରୁ କେ ଶିଷ୍ୟ ହୁଅନ୍ତା କାହିଁ ମୁଣ୍ଡାନ୍ତି ମଥା ।।
ଅବିବେକ ହୋଇ ରହିଲ ଶୁଣି ହେଲି ଚକିତ ।
ଦିବା ରଜନୀ ଗୁଣୁଥାଇ ଶାନ୍ତ ନୋହିଲା ଚିତ୍ତ ।।
କେ ଦେବତା କେହୁ ଭକତ କେ କାହାକୁ ପୂଜିଲା ।
କେ ଭୋଗରାଗ କରାଇଛି କେହୁ ଗୋଟା ଭୁଞ୍ଜିଲା ।।
କେ ଯଦି କେ ସତୀ କେ ପତି କେଉଁ ଗୋଟା ନିରସ ।
କେ କଲା ତହୁଁ ଦ୍ୱନ୍ଦ୍ୱ ବାଦ କେହୁ ଗୋଟା ହରଷ ।।
କେ ନର ଗୁଞ୍ଜର ତୁରଙ୍ଗ କେ କାହିଁରେ ଆଶ୍ରମ ।
କେ ଅଙ୍ଗେ ଚନ୍ଦନ ଲେପନ୍ତି କେଉଁ ପିଣ୍ଡ ଦହନ ।।
ଛପନକୋଟି ଜୀବଜନ୍ତୁ ସର୍ବଘଟେ ଏକତ୍ୱ ।
ଲୀଳା ନିମନ୍ତେ ନାନାକାର ଭଣେ ଦୀନ ଅଚ୍ୟୁତ ।।

(୭)

ଗୀତା ଭାଗବତ ପୁରାଣ ଶ୍ରୁତି ବେଦ ପୁଛିଲି ।
ତୋ ବିନୁ ମୋତେ ଗତି ନାହିଁ ତୀର୍ଥ ବାତ ଲୋଡ଼ିଲି ।।
ଗୁରୁ ଶବଦ କୃଷ୍ଣ ବ୍ରହ୍ମଜ୍ଞାନ କହିଲେ କର୍ଣ୍ଣେ ।
ସତ୍ୟ ଶାନ୍ତି ଦୟା କ୍ଷମାକୁ ହେତୁ ଚୈତନ୍ୟ ମନ ।।
ଇହ ପରଲୋକେ ବୋଲନ୍ତି ଗତ ପରଚେତନୁ ।
ତ୍ରିଗୁଣ ଅର୍ଘତିମିରକି ସତ୍ତ୍ୱ ଦର୍ଶନ ଭାନୁ ।।
କମଳକେଶର ଦଳରେ ଲୀଳା କରେ ଭ୍ରମର ।
ଶୂନ୍ୟରେ ଜ୍ୟୋତିଉର୍ମିଜ୍ୟୋତି ଶୂନ୍ୟେ ତୁମ୍ଭେ କେଶର ।।
ଛପନକୋଟି ଜୀବ ଜନ୍ତୁ ତେତିଶ କୋଟି ଦେବ ।
କହେ ଅଚ୍ୟୁତ ବିଷ୍ଣୁଭକ୍ତ ଯାର ବାସନା ଥିବ ।।

(୮)

ନ ଜାଣି ମୁଁ ଜଣାଉଛି ହେ ମଣୁଥିବ କେଶବ ।
ଦିବା ରଜନୀ ତିଳେ ତିଳେ ମୋର ହୃଦରେ ଥିବ ।।
ଜୀବ ଥାଉଁ ଥାଉଁ ଶରଣ ପ୍ରଭୁ ମାଗଇ ତୋତେ ।
ପ୍ରାଣ ପ୍ରୟାଣ ସମୟକୁ ଭ୍ରମ ଲାଗିଲା ମୋତେ ।।
କେଉଁ ବରଷ କେଉଁ ମାସ କେତେବେଳରେ ମୃତ୍ୟୁ ।
କାହୁଁ ଯାଇ କାହିଁ ରହିଲା ମୋର ନୋହିଲା ହେତୁ ।।
ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ସେ ଦିନକୁ ମୋ ଆଶା ।
ଅଭୟ ଚରଣେ ମାଗଇ ମୋର ଏହି ଭରସା ।।

ଚିତ୍ରୋତ୍ପଳା ନଦୀ ଉତ୍ତରେ ଗ୍ରାମ ନେମାଳ ସ୍ଥାନ ।
ସେ ସ୍ଥାନେ ଏ ଦେହ ରହିବ ମୋର ଏହି ଧିଆନ ।।
ଛପନକୋଟି ଜୀବ ଜନ୍ତୁ ଯହୁଁ କରିଛ ଜାତ ।
ତୁମ୍ଭ ଭୃତ୍ୟର ଭୃତ୍ୟ ମୁହିଁ ଭଣେ ଦୀନ ଅଚ୍ୟୁତ ।।

*ଇତି ଶ୍ରୀ ମହାପୁରୁଷ ଅଚ୍ୟୁତାନନ୍ଦ ଦାସ ବିରଚିତଂ ଅଷ୍ଟ ଗୁଜ୍ଜରୀ ସମ୍ପୂର୍ଣ୍ଣମ୍ ।*

ଓଁ ବନ୍ଦେ ମହାପୁରୁଷତେ ଚରଣାରବିନ୍ଦମ୍ ।

# ଶ୍ରୀଜଗନ୍ନାଥାଷ୍ଟକମ୍

କଦାଚିତ୍ କାଳିନ୍ଦୀତଟବିପିନସଙ୍ଗୀତକରବୋ
ମୁଦାଭୀରୀନାରୀବଦନକମଳାସ୍ୱାଦମଧୁପଃ
ରମାଶମ୍ଭୁର୍ବ୍ରହ୍ମାସୁରପତିଗଣେଶାର୍ଜିତପଦୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୧।
ଭୁଜେ ସବ୍ୟେ ବେଣୁଂ ଶିରସି ଶିଖିପିଚ୍ଛଂ କଟିତଟେ
ଦୁକୂଳଂ ନେତ୍ରାନ୍ତେ ସହଚର କଟାକ୍ଷଂ ବିଦଧତେ
ସଦା ଶ୍ରୀମଦ୍ ବୃନ୍ଦାବନବସତି ଲୀଳାପରିଚୟୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୨।
ମହାମ୍ଭୋଧେସ୍ତିରେ କନକରୁଚିରେ ନୀଳଶିଖରେ
ବସନ୍ ପ୍ରାସାଦାନ୍ତେ ସହଜବଳଭଦ୍ରେଣ ବଳିନା

ସୁଭଦ୍ରାମଧ୍ୟସ୍ଥ ସକଳସୁରସେବାବସରଦୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୩।
କୃପାପାରାବାରଃ ସକଳଜଳଦଶ୍ରେଣି ରୁଚିରୋ
ରମାବାଣୀରାମ ସ୍ଫୁରଦମଳପଦ୍ମେକ୍ଷଣମୁଖୈଃ
ସୁରେନ୍ଦ୍ରୈରାରାଧ୍ୟଃ ଶ୍ରୁତିଗଣଶିଖାଗୀତଚରିତୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୪।
ରଥାରୂଢ଼ୋ ଗଚ୍ଛନ୍ ପଥିମିଳିତଭୂଦେବପଟଳୈଃ
ସ୍ତୁତିପ୍ରାଦୁର୍ଭାବଂ ପ୍ରତିପଦମୁପାକର୍ଣ୍ୟ ସଦୟଃ
ଦୟାସିନ୍ଧୁର୍ବନ୍ଧୁଃ ସକଳ ଜଗତାଂ ସିନ୍ଧୁ ସୁତୟା
ଜଗନ୍ନାଥଃ ସ୍ୱାମୀନୟନପଥଗାମୀ ଭବତୁ ମେ ।୫।
ପରବ୍ରହ୍ମା ପୀଡ଼ଃ କୁବଳୟଦଳୋତ୍ଫୁଲ୍ଲନୟନୋ-
ନିବାସୀ ନୀଳାଦ୍ରୌ ନିହିତଚରଣୋଽନନ୍ତ ଶିରସି
ରସାନନ୍ଦୋ ରାଧାସରସବପୁରାଲିଙ୍ଗନ ସୁଖୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୬।
ନବୈ ଯାଚେ ରାଜ୍ୟଂ ନ ଚ କନକମାଣିକ୍ୟବିଭବଂ
ନଯାଚେଽହଂ ରମ୍ୟାଂ ନିଖିଳଜନକାମ୍ୟାଂ ବରବଧୂମ୍
ସଦାକାଳେ କାଳେ ପ୍ରମଥପତିନା ଗୀତଚରିତୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୭।
ହର ତ୍ୱଂ ସଂସାରଂ ଦ୍ରୁତତରମସାରଂ ସୁରପତେ
ହର ତ୍ୱଂ ପାପାନଂ ବିତତିମପରାଂ ଯାଦବପତେ

ଅହୋ ! ଦୀନନାଥଂ ନିହିତମଚଳଂ ନିଶ୍ଚିତପଦଂ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁମେ ।୮।
ଜଗନ୍ନାଥାଷ୍ଟକଂ ପୁଣ୍ୟଂ ଯଃ ପଠେତ୍ ପ୍ରଯତଃ ଶୁଚିଃ
ସର୍ବପାପବିଶୁଦ୍ଧାତ୍ମା ବିଷ୍ଣୁଲୋକଂ ସ ଗଚ୍ଛତି ।୯।

*

*ତ୍ରାହି ଅଚ୍ୟୁତ !*

# ଦୁର୍ଗା ସହସ୍ର ନାମ

## ଋଷିଛନ୍ଦଃ

ଓଁ ଅସ୍ୟ ଶ୍ରୀ ଦୁର୍ଗାସହସ୍ରନାମୋସ୍ତୋତ୍ରସ୍ୟ ଆରଣ୍ୟକ ଋଷିଃ ଅନୁଷ୍ଟୁପ୍‌ଛନ୍ଦଃ । ଶ୍ରୀ ଭଗବତୀ ଜୟଦୁର୍ଗା ଦେବତା । ହ୍ଲୀଂ ବୀଜଂ ସ୍ୱାହା ଶକ୍ତିଃ । ହୁଂ କୀଲକଂ । ମମ ସର୍ବପାପନିବାରଣାର୍ଥେ ଜପେ ବିନିଯୋଗଃ ।

## ଧ୍ୟାନଂ

*ଧ୍ୟାୟେତ୍ସୁ ବର୍ଣ୍ଣବର୍ଣ୍ଣାଭାଂ ତ୍ରିନେତ୍ରାଂ ଗ୍ମରୁହାସିନୀଂ ।*
*ସର୍ବଲକ୍ଷଣସମ୍ପନ୍ନା ମର୍ଦ୍ଧେନ୍ଦୁ କୃତଶେଖରାଂ ॥*
*ଚତୁର୍ଭୁଜାଂ ଶଙ୍ଖଚକ୍ରଧରାଂ ବାଳାଂ ସ୍ୱରୂପିଣୀଂ ।*
*ଉଦ୍ୟତ୍ରିଶୂଳନିର୍ଭିନ୍ନଂ ମହିଷାଂ ସିଂହବାହିନୀଂ ॥*
*ମୁକ୍ତାଦାମଲସତ୍କଣ୍ଠାଂ ମୁନିଭିଃ ସ୍ତୁତିପାଠକୈଃ ।*
*ସିଦ୍ଧୈ ଦେବଗଣୈ ଯୁଷ୍ଟାଂ କୁମାରୀଭିଶ୍ଚ ସେବିତାଂ ॥*
*ସର୍ବକାମପ୍ରଦାଂ ଦୁର୍ଗା ବରଦାଂ ଭକ୍ତବତ୍ସଳାଂ ।*
*ଓଁ ନମୋ ମହିଷାମର୍ଦ୍ଦିନୈ୍ୟ । ଓଁ ନମଃ ସର୍ବଲୋକଜନନୈ୍ୟ*
*ଓଁ ନମୋ ଜୟଦୁର୍ଗାୟୈ । ଓଁ ନମଃ ପ୍ରକୃତି ରୁପିଣୈ୍ୟ ।*
*ଓଁ ନମଃ ଶୁଣ୍ଡମୁଣ୍ଡ ପ୍ରମଥିନୈ୍ୟ । ଓଁ ନମଃ ପରମସୁଖପ୍ରଦାୟୈ*
*ଓଁ ନମଃ ପରମାନନ୍ଦଦାୟିନୈ୍ୟ ।*
*ଓଁ ନମଃ ପରମସୁଖପ୍ରଦାୟୈ ।*
*ଓଁ ଦେବୈ୍ୟ ଶିବାୟୈ ଅଭୟଦାୟିନୈ୍ୟ ଦୁର୍ଗାୟୈ ନମୋନମଃ ।*

# ଦୁର୍ଗା ସହସ୍ରନାମ ଆରମ୍ଭ

ଦୁର୍ଗା ଭଗବତୀ ଭଦ୍ରା ଶିବା ସ୍ୱର୍ଗାପବର୍ଗଦା ।
ଚଣ୍ଡିକା କାଳିକା ବାଳା ବିମଳା କମଳା ସତୀ ॥
ଶାନ୍ତିଃ କ୍ଷାନ୍ତିଃ କ୍ଷିତିଃ କ୍ଷୀଣକ୍ଷମାରୂପା କ୍ଷତାଶ୍ୱରୀ ।
ଲଜ୍ଜା ତୁଷ୍ଟାଃ ସ୍ତୁତିଃ ସ୍ତୁତ୍ୟା ଭବାନୀ ଭବମୋହିନୀ ॥
ରୁଦ୍ରାଣୀ ବୈଷ୍ଣବୀ ଭୀମା ବ୍ରାହ୍ମଣୀ ବ୍ରହ୍ମରୂପିଣୀ ।
ସର୍ବାଙ୍ଗୀ ଶଙ୍କରୀ ସାଧ୍ୱୀ ସଦାନନ୍ଦ ବିଧାୟିନୀ ॥
ମଙ୍ଗଳାମଙ୍ଗଳା ହନ୍ତ୍ରୀ ବିଶ୍ୱମାତା ହରପ୍ରିୟା ।
ଗିରିରାଜସୁତା ଗୌରୀ ଗିରି କନ୍ଦରବାସିନୀ ॥
ବିଶ୍ୱହା ବିଶ୍ୱଜନନୀ ବିଶ୍ୱପାଳନକାରିଣୀ ।
ବନ୍ଧାରୁବନ୍ଧ୍ୟା ବରଦା ବରଣ୍ୟା ହରଭାମିନୀ ॥
ମହାମାୟା ମହାରାତ୍ରି ମୋହତ୍ରିଶ ଦାରୁଣା ।
ଅଟ୍ଟହାସିନୀ ଚଣ୍ଡୀ ଘୋର ଘର୍ଘରନାଦିନୀ ॥
କରାଳବଦନା କାଳୀ କରାଳାକ୍ଷୀ କଳାବତୀ ।
ହ୍ରୀଃ ଶ୍ରୀ ରାଦ୍ୟା ଜ୍ୟାଜ୍ୟେଷ୍ଠା ଜନନୀ ନିର୍ଜରା ଜରା ॥
ଜଗତ୍ପୂଜ୍ୟା ଜଗଦ୍ଧାତା ଜଗଦ୍‌ଜୋନିର ଯୋନିଜା ।
ଦେବମାତା ଦେବମାତା ଦେବାନନ୍ଦକରି ସଦା ॥
ସର୍ବମନ୍ତ୍ରମୟୀ ବିଦ୍ୟା ବିଦ୍ୟାନ୍ନବହର ପ୍ରିୟା ।
ମହାଶକ୍ତି ର୍ମହାଭୂତି ର୍ମହାବିଦ୍ୟା ର୍ମହାଦ୍ୟୁତିଃ ॥

କୌମାରୀ ଶକ୍ତିହସ୍ତା ଚ ମହାବୃକ୍ଷ ଭବାହିନୀ ।
ଖଡ୍‌ଗପାଣି ର୍ଗଦାହସ୍ତା ଘୋର ଖର୍ପରଧାରିଣୀ ॥
ତ୍ରିନେତ୍ରା ଚ ଦ୍ୱିନେତ୍ରା ଚ ବହୁନେତ୍ରା ବିଭାବରୀ ।
ସର୍ବବିଦ୍ୟାମୟୀ ଦେବୀ ସଦା ମଙ୍ଗଳକାରିଣୀ ॥
ମତିର୍ଦ୍ୟୁତିଃଶ୍ରୁତିଃ ଶାନ୍ତି ର୍ଜ୍ୟୋତିର୍ଭୁତି ର୍ମୃତିଃକ୍ଷତି ।
ନାରାୟଣୀ ନିରାତଙ୍କା ନରକାର୍ଣ୍ଣବତାରିଣୀ ॥
ନନ୍ଦ ଗୋପଗୃହେ ଜାତା ଯଶୋଦାଗର୍ଭ ସମ୍ଭବା ।
ମେନକା କନ୍ୟକା ଭୀମା ଭୀମମାନସ ତୋଷିଣୀ ॥
ଭୀମବକ୍ତ୍ର ଭୀମନେତ୍ରା ଭୀମକର୍ମା ଭୟଙ୍କରୀଂ ।
ସର୍ବଲକ୍ଷଣସମ୍ପନ୍ନା ମର୍ଦ୍ଧେନ୍ଦୁ କୃତଶେଖରା ॥
ଶଙ୍ଖଚକ୍ରଧରା ଦେବୀ ଭବାନୀ ଭବମୋହିନୀ ।
ହରଜାୟା ବିଶାଳାକ୍ଷୀ ଯୋଗିନୀଗଣସେବିତା ॥
ଯୋଗନିଦ୍ରା ଯୋଗମାୟା ଯୋଗେନ୍ଦ୍ର ଗଣବନ୍ଦିତା ।
ଯୋଗରୂପା ମହାରୂପା ସ୍ୱରୂପା ଚ କୁରୁପିଣୀ ॥
ଦକ୍ଷକନ୍ୟା ଦକ୍ଷଯଜ୍ଞ ନାଶିନୀ ବନବାସିନୀ ।
ଦିବ୍ୟରୂପା ଦିବିସଦାଂ ଦୁଃଖଶୋକ ବିନାଶିନୀ ॥
ଦିବ୍ୟାମ୍ବରାଧରା ବାଳା ଦିବ୍ୟଗନ୍ଧାନୁ ଲେପନା ।
ରକ୍ତବର୍ଣ୍ଣା ଶ୍ୟାମବର୍ଣ୍ଣା ରକ୍ତୌଷ୍ଠା ରକ୍ତଲୋଚନା ॥
ରକ୍ତପ୍ରିୟା ଭକ୍ତବୃନ୍ଦ୍ୟା ମାହାପାତକ ନାଶିନୀ ।
ପର୍ବତସ୍ଥା ପୂର୍ବରୂପା ସବଳା ବଳ ଦାୟିନୀ ॥

ଉମା କାତ୍ୟାୟିନୀ ଶ୍ୟାମାରମା ରମ୍ୟା ରଣ ପ୍ରିୟା ।
ଶୂଳହସ୍ତା ଚ ପାପଘ୍ନି ତ୍ରିପାପଘ୍ନୀ ତ୍ରିଦୋଷହା ॥
ତରଳାପାଙ୍ଗୀ ଶୁର୍ବଙ୍ଗୀ ରକ୍ତିକ ରକ୍ତଦନ୍ତିକା ।
ମହାବୁଦ୍ଧି ମହାମେଧା ମହାକାନ୍ତି ମହାସ୍ମୃତି ॥
ବୃଷାରୂଢ଼ା ଗଜାରୂଢ଼ା ମୟୂରବର ବାହନା ।
ଲୋକମାତା ଲୋକବନ୍ଦ୍ୟା ଲୋକତ୍ରୟା ଭୟାପ୍ରଦା ॥
ଚଣ୍ଡମୁଣ୍ଡଘ୍ନି ଶୁମୁଣ୍ଡା ଚଣ୍ଡିକା ଚଣ୍ଡବିକ୍ରମା ।
ନିଶୁମ୍ଭଘାତିନୀ ଘୋରା ରକ୍ତବୀଜ ନିପାତିନୀ ॥
ଶାକମ୍ବରୀ ଶୋକହାରୀ ଶୁଦରୀ ସୁନ୍ଦରୀ ଦରୀ ।
ସିଂହସ୍ଥା ସିଂହମଧ୍ୟା ଚ ସିଂହରୂଢ଼ା ଶିବପ୍ରିୟା ॥
ଅମ୍ବାଳିକା ରକ୍ତକାମା ଶିବରୂଢ଼ା ଶିବାମ୍ବିକା ।
ଅଳକା ସ୍ୱର୍ଣ୍ଣବର୍ଣ୍ଣାଭାଂ ଭୈରବୀ ଭୀମନାଦିନୀ ॥
ଭଦ୍ରକାଳୀ ବିଶେଷଜ୍ଞ ଜୟଦା ବିଜୟା ଜୟା ।
ଜ୍ୱଳିନୀ ଜ୍ଞାନୀନୀ ଚୈବ ଗାଳିନୀ ବିଷ୍ଣୁଲିଙ୍ଗିନୀ ॥
ପବିତ୍ରା ପରମାରାଧ୍ୟା ଚଞ୍ଚଳା ଚପଳା ଅପି ।
ଦୀର୍ଘଘୋଷା ସୁଘୋଷଣା ଚ ହବ୍ୟକବ୍ୟବହା ସତୀ ।
ରଣଚଣ୍ଡୀ ମହାଚଣ୍ଡୀ ଦଣ୍ଡିନୀ ଚଣ୍ଡବିକ୍ରମା ।
ଖଟ୍ୱାଙ୍ଗଧାରିଣୀ ଧୀରା ବନ୍ଧୁରା ବନ୍ଧୁ ପ୍ରୀତିଦା ॥
କପାଳିନୀ ସୀତା ସୀତା ଜଗଦ୍ଧାତ୍ରୀ ଜଗତ୍ ପ୍ରିୟା ।
ମଧୁକୈଟଭହନ୍ତ୍ରୀ ଚ ଘୋରଦୈତ୍ୟ ବିନାଶିନୀ ॥

ନିଶୁମ୍ଭ ଶୁମ୍ଭଦଳିନୀ ମହିଷାସୁର ମର୍ଦ୍ଦିନୀ ।
ବିକ୍ଷୁରାକ୍ଷ ଶିରଛେଦ କାରିଣୀ ଦୁଃଖହାରିଣୀ ॥
ଉଗ୍ରା ବ୍ୟଗ୍ରା ଉଗ୍ରତାରା ଗିରିଜା ଗିରିମଣ୍ଡନା ।
ଗିରିନ୍ଦ୍ର ତନୟା ତାରା ଗିରିରାଜୋପରି ସ୍ଥିତା ॥
ଭୂତରୂପା ଭୂତବନ୍ଧ୍ୟା ଭୂତକୃତ୍ ଭୂତ ନାଶିନୀ ।
ପ୍ରଭୁତ ଭୂତିଦାତ୍ରୀ ଚ ଭୂତମଣ୍ଡଳ ସଂସ୍ଥିତା ॥
ଡାକିନୀ ଶାକିନୀ ପ୍ରେତ ପିଶାଗ୍ଚଦି ଗଣନ୍ୱିତା ।
ସ୍ୱାହା ସ୍ୱଧା ବଷଟ୍‌କାରା ସତ୍ୟା ସତ୍ୟବତୀ ରତିଃ ॥
ଗାୟତ୍ରୀ ରୂପା ଗୋମାତା ମାତା ଗୋଲକବାସିନୀ ।
ଚରାଚରାତ୍ମିକା ଚିତ୍ରରେଖା ଚିତ୍ରା ଚିଦାତ୍ମିକା ॥
ଅରୂପାନନ୍ଦରୂପା ଚ ବହୁରୂପାଣି ରୂପିକା ।
ଛଯ୍ୟଦୁର୍ଗା ଜରା ବୃଦ୍ଧା ବାଳିକା ତରୁଣାରୁଣା ॥
ପାର୍ବତୀ ସର୍ବଜନନୀ ସର୍ବାଣୀ ସର୍ବମଙ୍ଗଳା ।
ସାରଦା ବରଦା ସିଦ୍ଧା ସିଦ୍ଧଦା ଶ୍ରେର୍ଦ୍ଧ୍ୱ ବାସିନୀ ॥
ସୁମତିଃ କୁମତିଃ କୃଷ୍ଣା କୃଷ୍ଣକେଶା କୃଶୋଦରୀ ।
ନିର୍ବୀଜା ବୀଜରୂପା ଚ ମାତୃକା ସପ୍ତମାତୃକା ॥
ପୁଣ୍ୟା ସୌମବତୀ ସୌମ୍ୟା ମତ୍ସ୍ୟମାଂସ ପରାୟଣା ।
ତ୍ରିପୁରା ବଗଳା ଛିନ୍ନମସ୍ତକା ଭୁବନେଶ୍ୱରୀ ॥
ଶିବଦୂତୀ ଶିବାରାଧ୍ୟା ଆକାରୋ କାରରୂପିଣୀ ।
କ୍ଷରାକ୍ଷରା ବର୍ଣ୍ଣରୂପା ଅର୍ଦ୍ଧନାରୀ ମାହେଶ୍ୱରୀ ॥

ଚିଦାନନ୍ଦମୟା ଭବ୍ୟା ଭବଭାର୍ଯ୍ୟା ଭବାମ୍ବିକା ।
କାତ୍ୟାୟିନୀ କଳାକାଷ୍ଠା ରୂପିଣୀ କଳିନାଶିନୀ ॥
କୈଳାସବାସିନୀ କାର୍ତ୍ତି ନୃତ୍ୟକୀର୍ତ୍ତନତତ୍ପରା ।
ଅନେକନାମ୍ନୀ ଗ୍ୱନାମ୍ନୀ ସର୍ବନାମ ବିବର୍ଜିତା ॥
ଋଦ୍ଧିଦା ବୃଦ୍ଧିଦା ଶୁଦ୍ଧା ଋକ୍ଷଦା ମୋକ୍ଷଦାଭୟା ।
ସୁଷମା ପରମା ଶୋଭା ପରମାଦ୍ୟା ପରାତ୍ପରା ॥
ପଣ୍ଡିତା ମଣ୍ଡିତାରାଧ୍ୟା ନୃତ୍ୟବାଦନ ତତ୍ପରା ।
ଅନର୍ଘ୍ୟା ଅର୍ଘ୍ୟରୂପା ଚ ମହାର୍ଘ ଭୂଷଣା ଶୁଚିଃ ॥
ଶ୍ମଶାନ ଚଣ୍ଡୀ ଗ୍ୱମୁଣ୍ଡା କାଳୀ ଦକ୍ଷିଣକାଳୀକା ।
ସୁଭଦ୍ରା କଲ୍ପଲତିକା କ୍ରୀଡ଼ା କୌତୁହଳପ୍ରିୟା ॥
ମୃଡ଼ା ହୈମବତୀ ପଦ୍ମା ନିଧିତା ନିଧିରୂପିଣୀ ।
କାମିନୀଯାମିନୀ କାମ୍ୟା କମନୀୟା କୃପାନ୍ୱିତା ॥
ଧରାଧରା ଧରୟିତ୍ରୀ ଧାତ୍ରୀ ତ୍ରିପୁରସୁନ୍ଦରୀ ।
କାମାକ୍ଷୀ ରୁଦ୍ର ଚଣ୍ଡୀ ଚ ନିମ୍ନନାଭିଃ କ୍ଷମାବତୀ ॥
ଅତସୀକୁସୁମାଭା ଚ ପ୍ରେମଶାସ୍ତ୍ର ବିଶାରଦା ।
ସଗୁଣା ନିର୍ଗୁଣାନମ୍ରା ଗୁଣ ଭେଦକରାଧୃତିଃ ॥
ସର୍ବକାଳ କ୍ଷୟଂକରୀ ସର୍ବକାଳ ବିନାଶିନୀ ।
ଶାକମ୍ବରୀ ଶିବରୂପା ଧୂମ୍ର ଲୋଚନପ୍ରାଣହା ॥
କୁମାରୀ ସେବିକାସଂଖ୍ୟା କୁଙ୍କୁମାଙ୍କ ବିଳାସିନୀ ।
ଦୀର୍ଘନାଭି ଦୀର୍ଘତନୁ ଦୀର୍ଘନେତ୍ରା ସୁଦୀର୍ଘିକା ॥

ଶୋଭନାଙ୍ଗୀ ସୂକ୍ଷ୍ମତନୁ ପୋଷଣା ରୋଷଣବଣା ।
ଲଜ୍ଜାତ୍ମିକା ଚନ୍ଦ୍ରକଳା ଯୁଗରୂପା ଯୁଗାନ୍ତକା ॥
ସର୍ବଶବ୍ଦ କ୍ଷୟକାରୀ ସର୍ବ ତତ୍ତ୍ୱ ସ୍ୱରୂପିଣୀ ।
ବୀଣାବାଦ୍ୟମୟୀ ଦେବୀ ବୀଣାବାଦନ ତତ୍ପରା ॥
ଭୂରୂପା ସ୍ୱର୍ଗରୂପା ଚ ସାମବେଦ ବିଳାସିନୀ ।
ଚନ୍ଦ୍ରିକା ଚନ୍ଦ୍ର କାନ୍ତିଶ୍ଚ ଚନ୍ଦ୍ର ମୌଳି ପ୍ରିୟଙ୍କରୀ ॥
ଇତୀଦଂ କୀର୍ତ୍ତୟେଦ୍ ଯସ୍ତୁ ଦୁର୍ଗାନାମ ସହସ୍ରକଂ ।
ଶ୍ଳୋକମେକଂ ପଦଂ ବାପି ପାଦଂ ବା ଗ୍ୱର୍ଦ୍ଧ ପାଦକଂ ॥
ପ୍ରଭାତେ ଗ୍ୱର୍ଦ୍ଧ ଦିବସେ ସାୟଂକାଳାର୍ଦ୍ଧ ରାତ୍ରକେ ।
ଦୁର୍ଗମେ ବା ବନ ମାର୍ଗେ ଶୟନେ ବା ନଦୀତଟେ ॥
ଶିବାଳୟେ ଶୁଦ୍ଧଭୂମେ ବିପଦ ସଙ୍କଟେଽପି ବା ।
ଶ୍ରାଦ୍ଧେଽହ୍ନ ପୁଣ୍ୟଦିବସେ ସଂକ୍ରାନ୍ତ୍ୟାଂ ହରିବାସରେ ॥
ଲକ୍ଷଧେନୁ ଦାନଫଳଂ ଲଭତେ ନାତ୍ରସଂଶୟଃ ।
ବ୍ରାହ୍ମଣଃ କ୍ଷତ୍ରିୟୋ ବୈଶ୍ୟଃ ଶୁଦ୍ରୋ ବା ଯଦି ଭକ୍ତିତଃ ॥
ପଠେନ୍ନାମ ସହସ୍ରଂ ତୁ ଲପ୍ସ୍ୟତେ ବାଞ୍ଛିତଂ ଫଳଂ ॥
ଅଶ୍ୱମେଧ ସହସ୍ରସ୍ୟ ଫଳଂ ଚ ତତ୍ସମଃ ନହି ।
ତୀର୍ଥସ୍ନାନ ଫଳଂ ଲବ୍ଧ୍ୱା ଧନଧାନ୍ୟ ବିଭିର୍ଯ୍ୟତଃ ॥
ପୁତ୍ରକାମୀ ଦ୍ୱିରାବୃତ୍ତ୍ୟା ପଠେତ୍ ସ ପୁତ୍ରମାପ୍ନୁୟାତ୍ ।
ଧନକାମୀ ଶତା ବୃତ୍ତ୍ୟା ଧନଦସ୍ୟ ସମୋଭବେତ୍ ॥

ଯଶଃକାମା ତ୍ରିରାବୃତ୍ୟା ଅକ୍ଷୟଂ ଯଶମାପ୍ନୁୟାତ୍ ।
ବିଦ୍ୟାକାମୀ ଲଭେତ୍ ବିଦ୍ୱାନ୍ ସପ୍ତାବୃତ୍ୟ ତୁ ନିଶ୍ଚିତଂ ॥

ଇତି ଶ୍ରୀ ଯୋଗିନୀତନ୍ତ୍ରେ ଶ୍ରୀ ଦୁର୍ଗାସହସ୍ର ନାମ
ସ୍ତୋତ୍ରଂ ସମ୍ପୂର୍ଣ୍ଣଂ ।

# ସର୍ବ ମଙ୍ଗଳା ସ୍ତୁତି

ପାତକ ହାରିଣୀ ଦେବୀ ପ୍ରଣମାମି ହରପ୍ରିୟେ,
ପୁନାସି ସାନମସ୍ମାକଂ ଅଧିଷ୍ଠାନେ ନହି ତବ ।
ଅଶୁଭଂ ନିଧନଂ ଯାତୁ ପ୍ରଣମ୍ୟନ୍ତି ବିପତ୍ତିୟଃ,
ଏତଦ୍ ପାର୍ଥିତଂ ଦେବୀ ତ୍ୱମେକଂ ଶରଣଂ ହୀନଃ ।
ଭକ୍ତିଦେହୀ ଗୁଣଂଦେହୀ ଦେହୀମେ ବରମିଦୃଶ୍ୟମ୍ ,
ନେ ନହିସ୍ୟତ ମନୁଷ୍ୟାଣା ସଦା ଦେଶହିତେ ରତି ।
ସମ୍ପାଦ୍ୟ ଲୋକସତ୍ୱଞ୍ଚ ପ୍ରଣମନ୍ତି ତବପଦାମ୍ବୁକମ୍,
ଏତଦ୍ ପାର୍ଥିତଂ ଦେବୀ ତ୍ୱମେକଂ ଶରଣ ହୀନଃ ।

ଜୟ ଜୟ ଜୟ ମାଗୋ ଜଗତବନ୍ଦିନୀ ।
ଜୟ ଜୟ ଜୟ ମାଗୋ ବିଘ୍ନ ବିନାଶିନୀ ॥
ଜୟ ଜୟ ଜୟ ମାଗୋ ତ୍ରିପୁରମୋହିନୀ ।
ଜୟ ଜୟ ଜୟ ମାଗୋ ସଙ୍କଟତାରିଣୀ ॥
ଜୟ ଜୟ ଜୟ ମାଗୋ ନୃର୍ମୁଣ୍ଡମାଳିନୀ ।
ଜୟ ଜୟ ଜୟ ମାଗୋ ଶଙ୍କରଭବାନୀ ॥
ଜୟ ଜୟ ଜୟ ମାଗୋ ତ୍ରିତାପହାରିଣୀ ।
ଜୟ ମାତା ତୋ ଦୟାରେ ମୂର୍ଖ ହୁଏ ଗୁଣୀ ॥
ଜୟ ତୁ ମଙ୍ଗଳା ମାଗୋ ଜୟ ହରଚଣ୍ଡୀ ।
ତୋତେ ସୁମରିଲେ ମାଗୋ ଦୂରିତ ଯେ ଖଣ୍ଡି ॥

ବିପଦ କାଳରେ ସୁମରନ୍ତି ଯେଉଁ ଜନ ।
ମହାଘୋର ବନ୍ଧନରୁ ଫିଟାଉ ବହନ ॥
ଅଦୃଶ୍ୟକୁ ଦୃଶ୍ୟ ହୁଏ ତୋ ନାମ ଧଇଲେ ।
ବିପତ୍ତି ନଥାଏ ମାଗୋ ତୋତେ ସୁମରିଲେ ॥
ତୋହର ଯେ ନାମମାନ ଯେହୁ ସୁମରଇ ।
କିଛିହିଁ ସଙ୍କଟ ମାଗୋ ବିପତ୍ତି ନଥାଇ ॥
ଅନାଥକୁ ଦୟା ମାଗୋ ହୁବ କରୁ ଦାରୁ ।
ଦୁସ୍ତର ପଡ଼ିଲେ ମାଗୋ ପ୍ରାଣୀଙ୍କୁ ଉଦ୍ଧାରୁ ॥
ଯେତେବେଳେ ପ୍ରାଣୀଙ୍କି ଯେ ପଡ଼ିଥାଇ କଷ୍ଟ ।
ତୋତେ ସୁମରିଲେ ମାଗୋ ଫିଟାଉ ସଙ୍କଟ ॥
ଏ ତୋହର ବାରବ୍ରତ ଯେହୁ କରେ ନିତି ।
ପାଏ ସେହୁ ଧନ ଜନ ଅଚଳ ସମ୍ପତ୍ତି ॥
ନମୋ ନାରାୟଣୀ ମାଗୋ ଅପର୍ଣ୍ଣା ପାର୍ବତୀ ।
ଭ୍ରମଣ ଯେ କରୁ ମାଗୋ ଅର୍ଦ୍ଧ ନିଶାରାତି ॥
ଚଣ୍ଡୀ ଯେ ଗ୍ୱମଣ୍ଡା ମାଗୋ ଖଟନ୍ତି ଅପାର ।
ଏମାନଙ୍କୁ ସଙ୍ଗେ ଘେନି ଭ୍ରମଣ ତୋହର ॥
ପୟରେ ଅଳତା ଭାଲେ ସିନ୍ଦୁରର ଚିତା ।
ରଙ୍ଗ ବସନରେ ତୋର ଶ୍ରୀଅଙ୍ଗ ଶୋଭିତା ॥
ସିଂହର ପୃଷ୍ଠରେ ମାଗୋ ବିଜେ କରି ଯାଉ ।
ଯେ ମୁଖେ ପଡ଼ିଲେ ମାଗୋ ନ ବର୍ତ୍ତନ୍ତି ଆଉ ॥

ନମସ୍ତେ ଶାରଳା ମାଗୋ ଶଙ୍କର ଭବାନୀ ।
ଦୟା କର ମୋତେ ମାଗୋ ଦନୁଜ ନାଶିନୀ ॥
ଶୁଖିଲା ସମୁଦ୍ରେ ମାଗୋ ବୁଡ଼ିଲା ମୋ ଭେଳା ।
ଦୁସ୍ତର ପଡ଼ିଲା ମାଗୋ ଉଦ୍ଧାର ମଙ୍ଗଳା ॥
ସଖା ସହୋଦର ମାଗୋ ବନ୍ଧୁବଳ ନାହିଁ ।
ବିପତ୍ତି କାଳରେ ସାହା ହୁଅ ମହାମାୟୀ ॥
ବିନ୍ଧ୍ୟଗିରି ବାସିନୀ ଗୋ ହୈମବତୀ ସୁତା ।
ଏମନ୍ତେ ଦ୍ୱାଦଶନାମ ଦେଲେ ଯେ ବିଧାତା ॥
ଝଙ୍କଡ଼େ ରହିଲୁ ନାମ ଶାରଳା ବୋଲାଇ ।
କାକଟପୁରେ ରହିଲୁ ମଙ୍ଗଳା ଯେ ତୁହି ॥
ଲହଲହ ଜିହ୍ୱା ମା' ସିନ୍ଦୁରେ ମୁଖମଣ୍ଡି ।
କୋଣାର୍କେ ରହିଲୁ ମା' ଅଭୟା ରାମଚଣ୍ଡୀ ॥
ଶ୍ରୀପୁରୁଷୋତ୍ତମେ ରହିଲୁ ବିମଳା ବୋଲାଇ ।
ବାଙ୍କିରେ ରହିଲୁ ମାଗୋ ନାମ ଚର୍ଚ୍ଚିକାୟୀ ॥
ସମ୍ବଲପୁରେ ରହିଲୁ ନାମ ସମଲାଇ ।
ଯାଜପୁରେ ରହିଲୁ ମା' ନାମ ବିରଜାଇ ॥
ପଶ୍ଚିମେ ରହିଲୁ ମାତ ନାମ ହେଙ୍ଗୁଳାଇ ।
ଭୁବନେଶ୍ୱରରେ ରହିଲୁ ଗଉରୀ ବୋଲାଇ ॥
ବାଣପୁରେ ରହିଲୁ ମା' ନାମ ଭଗବତୀ ।
ସକାଳେ ସଂଧ୍ୟାରେ ତୋତେ କରନ୍ତି ସେ ସ୍ତୁତି ॥

ଉତ୍ତର ଦିଗେ ରହିଲୁ ଚଣ୍ଡୀନାମ ବହି ।
ଏମନ୍ତ ଦ୍ୱାଦଶ ନାମ ବ୍ରହ୍ମା ଗଲେ ଦେଇ ॥
ତୋହର ମହିମା ମାଗୋ କେ ପାରିବ କହି ।
ମାଡ଼ି ବସିଅଛୁ ଦଶଦିଗ ମହାମାୟୀ ॥
ନମସ୍ତେ ଚଣ୍ଡିକା ତୁମ୍ଭେ ରୁଦ୍ରଙ୍କର ବାମା ।
କେ କହି ପାରିବ ମାଗୋ ତୁମ୍ଭର ମହିମା ॥
ତମ୍ଭରୁ ମଝା ମାଗୋ ବିଚିତ୍ର ସିଂହଠାଣି ।
ମହାମୂର୍ତ୍ତି ରୂପା ମାଗୋ ଅଟୁ ଗୋସାମଣି ॥
ଲହ ଲହ ଜିହ୍ୱା ମାଗୋ ଘୋର ଦନ୍ତପାଟି ।
ନମଃ ଆଦିମାତା ତୁହି ବିଜେ ସିଂହ ପିଠି ॥
କାତି ଯେ ଖର୍ପର ମାଗୋ ଶୋହେ ବାମ କର ।
ଶଙ୍ଖଚକ୍ର ଗଦା ମାଗୋ ଆୟୁଧ ତୋହର ॥
ନାନା ପୁଷ୍ପମାନ ତୋର କୁସୁମ ଚନ୍ଦନ ।
କପୋଳେ ସିନ୍ଦୁର ଗାର ଦିଶେ ଶୋଭାବନ ॥
ନମସ୍ତେ ଶାରଳା ମାଗୋ ଚଣ୍ଡୀ ମହାମାୟୀ ।
ଦୁସ୍ତର ପଡ଼ିଲେ ମାଗୋ ଉଦ୍ଧାରୁ ଯେ ତୁହି ॥
ତ୍ରେତା ଯୁଗେ ତୋତେ ମାଗୋ ସୁମରିଲେ ରାମ ।
ପ୍ରସନ୍ନ ହୋଇଣ ମାତ କଲୁ ପୂର୍ଣ୍ଣ କାମ ॥
ତୁମ୍ଭର ଆଜ୍ଞାରେ ରାମ ଲଙ୍କା କଲେ ଜୟ ।
ରାବଣକୁ ମାରି ସୀତା ଆଣି ରାମରାୟ ॥

ନମସ୍ତେ ଶାରଳା ମାଗୋ ରକ୍ଷା କର ମୋତେ ।
ମୁହିଁ ଅରକ୍ଷିତ ଜନ ଆଶ୍ରା କଲି ତୋତେ ॥
ଯେତେବେଳେ ଯାହା ମାଗୋ କରୁଥିବି ଇଚ୍ଛା ।
ତୋ ପାଦ ସ୍ମରଣେ ପୁରୁଥିବ ମନବାଞ୍ଛା ॥
ତୁମ୍ଭର ଚରଣେ ମୋର ରହୁ ମନସ୍ଥିତ ।
କହେ ଦୀନ ହୀନ ଯେ ଉଦ୍ଧାର ଆଦିମାତ ॥

## ଶାରଳାଙ୍କ ସ୍ତୁତି

ଜୟ ଜୟ ମହାମାୟୀ ଝଙ୍କଡ଼ ବାସିନୀ ।
ଦେବୀ ବୀଣାପାଣି ମାଗୋ ଜଗତ ତାରିଣୀ ॥
ଅଭୟ ବରଦାୟିନୀ ବିଦ୍ୟାପ୍ରଦାୟିନୀ ।
ଜୟ ଜୟ ସରସ୍ୱତୀ ସକଳ ବାସିନୀ ॥
ଜୟ ଜୟ ମହାମାୟୀ ତ୍ରୈଲୋକ୍ୟ ତାରିଣୀ ।
ଜୟ ଜୟ ଅଷ୍ଟଭୁଜା ମହିଷାମର୍ଦ୍ଦିନୀ ॥
ଝଙ୍କଡ଼ପୁର ନିବାସୀ ହୈମବନ୍ତ ସୁତା ।
ତୋତେ ସେବା କରି ମୂର୍ଖ ପଣ୍ଡିତେ ଗଣିତା ॥
ଅତି ହୀନଜନ ମାଗୋ କିଛି ନ ଜାଣଇ ।
ନିଜ ଗୁଣେ ଦୟା କରି କର ମାତ ତ୍ରାହି ॥
ଶୁଣିଥିଲି ସେବି ଥିଲେ ଯେ ଶାରଳା ଦାସ ।
ଅବିଘ୍ନେ ଲେଖିଲେ ଯେ ଭାରତ ଅଷ୍ଟାଦଶ ॥

ପୂର୍ବକାଳେ ତପବଳେ ମୂର୍ଖ କାଳିଦାସ ।
ସର୍ବଜ୍ଞ ପଣ୍ଡିତ ହେଲେ ରହିଅଛି ଯଶ ॥
ଜଗତେଶ୍ୱରୀ ତୋ ନାମ ଶୁଣିଣ ଅଛଇ ।
ତବ ପାଦେ ଶରଣ ମୁଁ ସତତ ପଶଇ ॥
ମୂର୍ଖ ପାଷାଣ୍ଡ ବୋଲିଣ ନ କର ମା ଦୂର ।
ସଦା ଅଧିନ୍ ସେବକ ଏ ତବ କିଙ୍କର ॥
ଏ ଭବ ସାଗରେ ମାତ ଭାସୁ ଯେ ଅଛଇ ।
କ୍ଷମ ଦୋଷ ତେଜ ରୋଷ କର ମାତା ତ୍ରାହି ॥
ଅକର୍ମେ ଯେ କର୍ମଦାନୀ ବୋଲିଣ ବୋଲାଇ ।
ସର୍ବଦା ରକ୍ଷା କର ମା' ଘଣ୍ଟକୁ ଘୋଡ଼ାଇ ॥
ଦାରିଦ୍ର୍ୟ ଭଞ୍ଜନୀ ନାମ ମାତା ଅନ୍ନପୂର୍ଣ୍ଣା ।
ଦୁଃଖ ବିଚ୍ଛେଦ ହୁଅଇ କଲେକ କାମନା ॥
ଭବସାଗରରୁ ଭେଳା ମାତ ସର୍ବେଶ୍ୱରୀ ।
ଅଶେଷ ବ୍ରହ୍ମାଣ୍ଡେ ଖ୍ୟାତ ନାମ ଯେ ତୁମରି ॥
ନମସ୍ତେ ସାରଳା ମାଗୋ ଚଣ୍ଡୀ ମହାମାୟୀ ।
ନମସ୍ତେ ରୁଦ୍ରାଣୀ ମା' ଉଦ୍ଧାର ଯେ ତୁହି ॥
ଭାରତେ ଭାରତୀ ନାମ ହୋଇ ତୁ ବିଦିତ ।
ମା ସିଂହବାହିନୀ ରକ୍ଷାକର ଆଦିମାତ ॥
ଦାସନୁଦାସ ଅପ୍ରାଧ ମାର୍ଜନା ନ କଲେ ।
ସଂସାରେ ହୋଇଲା ନିନ୍ଦା ମାତା ପୁତ୍ର ତୁଲେ ॥

ଯେଉଁଜନ ସରସ୍ୱତୀ ନାମକୁ ଧରିବ ।
କିଛି ହିଁ ଭୟ ତାଙ୍କର କାହିଁ ନ ହୋଇବ ॥
ଡାକୋଣୀ ପିଶାଚିନୀ ଯେ ଭୟରେ ଭାଜିବ ।
ରୋଗ ଶୋକ ଆଦି ଭବଭୟ ଦୂର ହେବ ॥
ତ୍ରିସନ୍ଧ୍ୟାରେ ଯେଉଁମାନେ ପଢ଼ିବେ ଶୁଣିବେ ।
ସର୍ବପାପ ନାଶିଣ ଐଶ୍ୱର୍ଯ୍ୟ ପ୍ରାପ୍ତ ହେବେ ॥
ପ୍ରାତଃ କାଳେ ଯେଉଁ ନର ସ୍ମରଣ କରନ୍ତି ।
ବ୍ୟାଧି ନାଶି ବିଦ୍ୟା ବୁଦ୍ଧି ସର୍ବଫଳ ପାନ୍ତି ।
ଶତ୍ରୁ ଭୟ ରାଜଭୟ ଦୂର ହୋଇଯାଏ ॥
ସକଳ ପାପରୁ ତୋର ଭକ୍ତ ରକ୍ଷା ପାଏ ।

## ଶ୍ରୀ ଦୁର୍ଗାଙ୍କ ସ୍ତୁତି

ଜୟ ଜୟ ଦୁର୍ଗା ମାଗୋ ସଙ୍କଟ ତାରିଣୀ ।
ଦୁଷ୍ଟ ଦୈତ୍ୟନାଶ କରି ରଖିଲ ଧରଣୀ ।୧।
ଦେବତାଙ୍କୁ ରଖିଲ ଯେ ଭକ୍ଷିଣ ଅସୁର ।
ଭକ୍ଷଣ ଭକ୍ଷଣି ନାମ ଅଟେ ଯେ ତୁମ୍ଭର ।୨।
ସ୍ଥାବର ଜଙ୍ଗମ କୀଟ ଆଦି ଗୃହିଖାନି ।
ତୁମ୍ଭର ଅଙ୍ଗରୁ ଜାତ ହେଲେ ରୂପ ଘେନି ।୩।
ତେଣୁ କରି ରୂପ ତୋର ଅଟଇ ଅରୂପା ।
ପାଇଲୁ ପରମ ଗତି ଜପିଣ ଅଜପା ।୪।

ପ୍ରଥମରେ ଦୁର୍ଗାଦେବୀ ଦ୍ୱିତୀୟରେ ଉମା ।
ଅନନ୍ତ ନାମ ତୋହର ଅପାର ମହିମା ।୫।
ସନ୍ଥଜନମାନଙ୍କୁ ଯେ ତୋହର ସଦୟେ ।
ଯେସନେ ବାଳୁତ ପୁତ୍ର ଗର୍ଭେ ଧରି ମାଏ ।୬।
ତୃତୀୟେ କାତ୍ୟାୟିନୀ ଚତୁର୍ଥେ ନାରାୟଣୀ ।
ପଞ୍ଚମେ ହୋଇଲ ମାଗୋ ଶିବଙ୍କ ଘରଣୀ ।୭।
ଷଷ୍ଠରେ କୌମାରୀ ନାମ ସପ୍ତମେ କାଳିକା ।
ଅଷ୍ଟମରେ ଜୟଚଣ୍ଡୀ ନବମେ ଅମ୍ବିକା ।୮।
ଦଶମେ ବ୍ରାହ୍ମଣୀ ଏକାଦଶରେ ପାର୍ବତୀ ।
ଦ୍ୱାଦଶରେ ଯୋଗ୍ନି ତ୍ରୟୋଦଶେ ଭଗବତୀ ।୯।
ଚତୁର୍ଦ୍ଦଶେ ତ୍ରିପୁରା ପଞ୍ଚଦଶେ ମଙ୍ଗଳା ।
ଷଡ଼ଦଶେ କୁମାରୀ ତୁ ସ୍ୱରୂପେ ଅବଳା ।୧୦।
ସତ୍ୟେ ସପ୍ତଦଶେ ଅଷ୍ଟାଦଶରେ ବାରାହୀ ।
ସହସ୍ରେକ ନାମ ତୋର ଅଟେ ମହାମାୟୀ ।୧୧।
ଏ ଅନ୍ତେ ସ୍ତୁତି ଯେ କରନ୍ତି ରାମରାୟ ।
ଜୟ ତୁ ଦୁର୍ଗା ମାଗୋ ଅନାଦି ସିଦ୍ଧକାୟ ।୧୨।
ନମସ୍ତେ କାତ୍ୟାୟିନୀ ଅନାଦି ମାହେଶ୍ୱରୀ ।
ସତ୍ୟଯୁଗରେ ମହିଷାସୁର ଦର୍ପହାରୀ ।୧୩।
କାଳୀ ଯେ କରାଳୀ ମାଗୋ ଅଟ ବିକରାଳୀ ।
ଶିରରେ ସିନ୍ଦୁର ମାଗୋ ହସ୍ତେ ଜପମାଳୀ ।୧୪।

ହରଙ୍କ ଘରଣୀ ମାଗୋ କୈଳାସ ମଣ୍ଡଣି ।
ବିନ୍ଧ୍ୟଗିରି ବାସିନୀ ଦୂରିତ ନିବାରିଣୀ ।୧୫।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଅସୁର ମାଇଲ ।
ଚଉଦ ବ୍ରହ୍ମାଣ୍ଡ ମହାମାୟୀ ବୋଲାଇଲ ।୧୬।
ସୁରା ପାନରେ ଯେ ତୁମ୍ଭେ ହୋଇ ମତ ଭୋଳ ।
ରଣରଙ୍ଗ ସଳେ ମାଗୋ କ୍ରୀଡ଼ାଗତି ତୋର ।୧୭।
ଅଯୋଧ୍ୟା ରାଜନ ଦଶରଥ ନରପତି ।
ତାହାଙ୍କ ତନୟ ମୁଁ ଗୋ ଅଟେ ଦାଶରଥି ।୧୮।
ରାଜ୍ୟ ତେଜି ମୁହିଁ ମାଗୋ ହେଲି ବନବାସୀ ।
ବଇଦେହୀ ହରାଇଣ ହୋଇଲି ଝିଙ୍ଗାସି ।୧୯।
ସାଗରକୁ ବାନ୍ଧିଲି ମୁଁ ଋକ୍ଷବଳ ଘେନି ।
ସୁବଳୟାରେ ରହିଲି ସ୍ୱର୍ଣ୍ଣଲଙ୍କା ଜିଣି ।୨୦।
କିଷ୍କିନ୍ଧ୍ୟା ରାଜନ ଯେ ମୋହର ଦୁଃଖ ଦେଖି ।
ଋକ୍ଷବଳ ଘେନି ମାଗୋ ସାହାକଲେ ଆସି ।୨୧।
ନାଗଫାଶ ବନ୍ଧନରେ ପଡ଼ିଅଛି ମୁହିଁ ।
ଏଥୁ ପାରିକର ମୋତେ ଦେବୀ ମହାମାୟୀ ।୨୨।
ଦେବତାମାନେ ଖଟନ୍ତି ତାର ଭୃତ୍ୟପଣେ ।
ମୁଁ କିସ ଯୁଦ୍ଧ କରିବି ବଳ ବପୁହୀନେ ।୨୩।
ନର ବାନରମାନଙ୍କୁ ସଙ୍ଗତରେ ଘେନି ।
ନା ଜାଣିଲା ଯୁଦ୍ଧ ମାଗୋ ଆରମ୍ଭିଲି ଆଣି ।୨୪।

ତୋତେ ସୁମରଣା ଯେ କରିଣ ଶଚୀପତି ।
ସ୍ୱର୍ଗପୁର ସମ୍ପଦ ସେ ସୁଖେ ବିଳାସନ୍ତି ।୨୫।
ତୋତେ ସୁମରଣା ମାଗୋ କରନ୍ତି କୁବେର ।
ଧନପତି ଗଣେ ମାଗୋ ବିଖ୍ୟାତ ସଂସାର ।୨୬।
ବିଷ୍ଣୁଙ୍କର ଆଳୟରେ ନାମ ସରସ୍ୱତୀ ।
ଈଶ୍ୱରଙ୍କ ଘରେ ମାଗୋ ବୋଲାଉ ପାର୍ବତୀ ।୨୭।
ଏକ ହସ୍ତେ ଖର୍ପର ମା' ଅନ୍ୟ ହସ୍ତେ ଖଣ୍ଡା ।
ଅନର୍ଗଳ ତୋର ମାଗୋ ସିଦ୍ଧି ପରଚଣ୍ଡା ।୨୮।
ମନ୍ଦାର ପୁଷ୍ପରେ ମାଗୋ ଭୂଷଣ ଶରୀର ।
ବାହୁରେ ତାଡ଼ ତୋହର ଚରଣେ ନୁପୁର ।୨୯।
ଏମନ୍ତ ଦିବ୍ୟରୂପ ତୁ ଧରିଣ ଗିରିଜା ।
ବିଷ୍ଣୁ ରୂପେ ମୋହିଲୁ ସମସ୍ତ ଜନ ପ୍ରଜା ।୩୦।
ସଙ୍କଟ ତାରିଣୀ ମାତ ଉଦ୍ଧରିବ ମୋତେ ।
ବିପତ୍ତି କାଳରେ ମୁହିଁ ଡାକୁଅଛି ତୋତେ ।୩୧।
ଅଗମ୍ୟ ଗଡ଼ର ନାମ ଜଗତେ ବିଖ୍ୟାତ ।
ଅମର ବର ପାଇଛି ବିଶ୍ରବାର ସୁତ ।୩୨।
ଅଠରଗଣ୍ଡା କୁମର ତେରଶତ ନାତି ।
ପଞ୍ଚାଶକୋଟି ଯେ ବଳ ଅସଂଖ୍ୟ ଅଟନ୍ତି ।୩୩।
ଚଉଦଭୁବନ ମଧ୍ୟେ ଅଟେ ନୃପବର ।
କ୍ଷତ୍ରିୟମାନଙ୍କ ପରେ ଅଟେ ବୀରବର ।୩୪।

ନର ଯେ ବାନର ମାଗୋ ତାର ଭକ୍ଷପାନ ।
କି ବୁଦ୍ଧି କରିବି ମାଗୋ ବଳ ବପୁହୀନ ।୩୫।
ଏମନ୍ତ ଅନେକ ସ୍ତୁତି କଲେ ଦାଶରଥି ।
ପ୍ରସନ୍ନ ହୋଇଲେ ତାଙ୍କୁ ମା' ଦୁର୍ଗା ପାର୍ବତୀ ।୩୬।
ଶ୍ରୀରାମଙ୍କ ସମୀପରେ ବିଜେ କଲେ ଯାଇ ।
ସିଂହର ପୃଷ୍ଠରେ ବଢ଼ି ଡମ୍ବରୁ ବଜାଇ ।୩୭।
କିମ୍ପାଇରେ ବାଳବନ୍ତ ବିନ୍ତାକଲୁ ମୋତେ ।
କିସରେ ତୋ ଅଭିପ୍ରାୟ କହ ମୋ ଅଗ୍ରତେ ।୩୮।
ଚେତିଣ ତା ଶ୍ରୀରାମ ଯେ ବୋଲୁଛନ୍ତି ବାଣୀ ।
ଶୁଣ ଆଗୋ ମାତଃ ହିମବନ୍ତର ଦୁଲଣୀ ।୩୯।
ଜଗତରେ ମୋହ ଦୁଃଖ କଳନା ନଯାଇ ।
ମୋହଠାରୁଁ ଦୁଃଖୀ ମାଗୋ ଅନ୍ୟ କେହି ନାହିଁ ।୪୦।
ରାଜପୁତ୍ର ହୋଇ ମାଗୋ ବନବାସ କଲି ।
କନ୍ଦମୂଳ ଫଳେ ମୁହିଁ ଉଦର ପୋଷିଲି ।୪୧।
ତିରଣ ଶଯ୍ୟାରେ ମୁହିଁ ବଞ୍ଚୁଅଛି ଦିନ ।
ପୁଣି ହିଁ ବିଧାତା ଆଣି ଦେଲା ଏ କଷଣ ।୪୨।
ଅରଣ୍ୟେ ଶୁଣିଲି ମାଗୋ ପିତା ଗଲେ ନାଶ ।
ନିକ୍ଷତ୍ରୀ ହୋଇଲା ମୋର ଅଯୋଧ୍ୟା ପ୍ରଦେଶ ।୪୩।
ଭରତ ରାଜ୍ୟରେ ମାଗୋ ନୃପତି ନୋହିଲା ।
ମୋତେ ନେବ ବୋଲି କରି ବନକୁ ଅଇଲା ।୪୪।

ପିତା ସତ୍ୟପାଳି ମୁହିଁ ରାଜ୍ୟକୁ ନଗଲି ।
ଗୋଦାବରୀ ନଦୀ ତଟେ ବାସ କରିଥିଲି ।୪୫।
ଏମନ୍ତ କଷ୍ଟରେ ମୁହିଁ ବଞ୍ଚିଥିଲି ଦିନ ।
ସୁର୍ପଣଖାର ଆଦେଶେ ପ୍ରବେଶ ରାବଣ ।୪୬।
ମାୟାବୀ ଦୈତ୍ୟ କୁରଙ୍ଗ ରୂପେକ ଦେଖାଇ ।
ସୁବର୍ଣ୍ଣ ଜଡ଼ିତ ତାର ହୋଇଥିଲା ଦେହୀ ।୪୭।
ଶ୍ରଦ୍ଧା ଭରେ ସୀତା ବୋଲେ କୁରଙ୍ଗକୁ ଆଣ ।
ତତକ୍ଷଣେ ଗଲି ମାଗୋ ଧରି ଧନୁର୍ବାଣ ।୪୮।
ବାଣ ବିନ୍ଧନ୍ତେ ତ୍ରାହି ଲକ୍ଷ୍ମଣ ଡାକ ଦେଲା ।
ଏକାକୀ ଦେଖି ରାବଣ ସୀତାକୁ ଯେ ନେଲା ।୪୯।
ଜଟାୟୁ ଓ ହନୁମନ୍ତ ବାରତା ସେ ଦେଲେ ।
ସମସ୍ତ ବୃତ୍ତାନ୍ତମାନ ମୋତେ ଯେ କହିଲେ ।୫୦।
ଇନ୍ଦ୍ରଜିତ ନାମ ତାର ଅଟଇ କୁମର ।
ସ୍ୱର୍ଗପୁରେ ପଶିଣ ଜିଣିଲା ବଜ୍ରଧର ।୫୧।
ଦେବ ଦଳନ ରଥରେ ଚଢ଼ି ତିନିପୁର ।
ସେ ମୋତେ ପେଶିଲା ମାଗୋ ନାଗଫାଶ ଶର ।୫୨।
ନାଗଙ୍କର ଜ୍ୱାଳା ମାଗୋ ସହି ନ ପାରିଲି ।
ତେଣୁ କରି ମୁହିଁ ମାଗୋ ତୋତେ ଆଶ୍ରା କଲି ।୫୩।
ଏ ଘୋର ବିପଦୁ ମାଗୋ ପାରିକର ମୋତେ ।
ଏବେ ଗୋ ତୁମ୍ଭର ଯଶ ରହିବ ଜଗତେ ।୫୪।

ଆତଙ୍କନାଶିନୀ ବାରେ ମୋତେ ଦୟା କର ।
ଏହି ବର ଆଜ୍ଞା ହେଉ ଶ୍ରୀମୁଖେ ତୁମ୍ଭର ।୫୫।
ରାବଣକୁ ମାରିଣ ସୀତାଙ୍କୁ ଘେନିଯିବି ।
ଅଯୋଧ୍ୟା ରାଜ୍ୟରେ ଯାଇ ଅଭିଷେକ ହେବି ।୫୬।
ଏହା ଶୁଣି ପ୍ରସନ୍ନ ହୋଇଲେ ମହାମାୟୀ ।
ଅସ୍ତୁ ବୋଲି ମହାମାୟୀ ରାମେ ଆଜ୍ଞା ଦେଇ ।୫୭।
ଗରୁଡ଼କୁ ମନେ ମନେ ସୁମରିଲେ ରାମ ।
ରମ୍ୟକ ଦ୍ୱୀପରୁ ଜାଣି ବିଷ୍ଣୁଙ୍କ ବାହାନ ।୫୮।
ଗରୁଡ଼ ଗମନ୍ତେ ନାଗମାନେ ପଳାଇଲେ ।
ଶ୍ରୀରାମ ଲକ୍ଷ୍ମଣ ବେନି ବନ୍ଧନୁ ଫିଟିଲେ ।୫୯।
ତୁମ୍ଭ ଶ୍ରୀଚରଣେ ମାଗୋ ରହୁ ମୋର ଚିତ୍ତ ।
କହେ ହୀନ ବଳରାମ ଭକ୍ତ ଆଦିମାତ ।୬୦।

## ଇଚ୍ଛାବସନ୍ତ ସ୍ତୁତି

ଜୟ ଜୟ ମହାମାୟୀ ଶ୍ରୀମଙ୍ଗଳା ଚଣ୍ଡୀ ।
ଲଲାଟରେ ଚିତା ମାଗୋ ସିନ୍ଦୁରରେ ମଣ୍ଡି ।୧।
ଶ୍ରବଣେ କୁଣ୍ଡଳ ମାଗୋ ନାସାଏ ଗଜ ମୋତି ।
ହସ୍ତରେ ଶୋଭଇ ଖଡ୍‌ଗ ଖର୍ପର ଯେ କାତି ।୨।
ରଙ୍ଗପୁଷ୍ପ ମାଳା ମାଗୋ ଗଳାରେ ଶୋଭିତ ।
ଆକାଶରେ ଡମ୍ବରୁ ବଜାଇ ଅପ୍ରମିତ ।୩।

ତୋହର ସେବାରେ ଥା'ନ୍ତି ଚଉଷଠି ଯୋଗ୍ନି ।
ତୁହି ଶିବ ତୁହି ଦୁର୍ଗା ତୁହି କାତ୍ୟାୟିନୀ ।୪।
ଆଦିଶକ୍ତି ମାଗୋ ତୁହି ନାମ ତୋ ପାର୍ବତୀ ।
ଅର୍ଦ୍ଧଅଙ୍ଗ ଦେଉ ମାଗୋ ଶିବଙ୍କ ବିଭୂତି ।୫।
ଦୁର୍ଗା ରୂପେ ଜାତ ମାଗୋ ହୋଇ ମହାମାୟୀ ।
କୋଟି ଅକ୍ଷୌହିଣୀ ସୈନ୍ୟ ହତ କଲୁ ତୁହି ।୬।
ରକ୍ତବାର୍ଯ୍ୟ ମହିଷ ଗୋ ଯମ ଘଣ୍ଟି ମୂଳେ ।
ଏହାଙ୍କୁ ନାଶିଲୁ ମାଗୋ ପୃଥିବୀର ଛଳେ ।୭।
ଖେଚରୀ ଭୂଚରୀ ମାଗୋ ଈଶ୍ୱରଙ୍କ ନାରୀ ।
ସ୍ୱର୍ଗକୁ ରଖିଲୁ ଦେବ ଅରି ନାଶ କରି ।୮।
ନବକୋଟି କାତ୍ୟାୟିନୀ ତୁହି କଲୁ ଜାତ ।
ମହିଷାସୁରକୁ ମାଗୋ କଲୁ ତୁ ନିପାତ ।୯।
ରୁଦ୍ରାଣୀ ତୁ ଅଟୁ ମାଗୋ ତୁହି ରୌଦ୍ରମୁଖୀ ।
ଇନ୍ଦ୍ରାଣୀ ବ୍ରାହ୍ମଣୀ ମାଗୋ ତୁହି ସର୍ବସାକ୍ଷୀ ।୧୦।
ଜଗତ ତାରିଣୀ ମାଗୋ ନାମ ନାରାୟଣୀ ।
ନିଜର ବନେ ତୋ ନାମ ପତ୍ର ସଉରୁଣୀ ।୧୧।
ଗଗନ ମାର୍ଗରେ ମାଗୋ ନିବାସ ତୋହରି ।
ସର୍ବ ଦେବଙ୍କର ମାତ ବିଘ୍ନ ନାଶକାରୀ ।୧୨।
ତେଣୁକରି ତୋତେ ମାଗୋ ସୁମରଣା କଲି ।
ଏ ବିପଦୁ ମାତା ରକ୍ଷା କରିବୁ ତୁ ବୋଲି ।୧୩।

ଇଚ୍ଛା ସୁଖେ ମାଗୋ ତୁହି କରୁ ଯେ ଭ୍ରମଣ ।
ତେଣୁ ଇଚ୍ଛାବସନ୍ତ ତୋ ନାମ ହେଲା ପୁଣ ।୧୪ ।
ଉଚ୍ଚ ନୀଚ ଜାତି ମାଗୋ ସମାନ ତୋହର ।
ପଶୁ ପକ୍ଷୀ କୀଟ ବୃକ୍ଷ ଲତା ନାରୀବର ।୧୫ ।
ଇଚ୍ଛା ସୁଖେ ନାନା ରୂପେ ହେଉ ଅବତାର ।
ସ୍ୱୟଂ ଦରଶନ ମିଳେ କଳିଯୁଗେ ତୋର ।୧୬ ।
ରକ୍ଷା କର ମାଗୋ ତୁହି ଘୋଡ଼ାଇ ପଣତ ।
କୃପା କରି ମୋ ଦୟନୀ ଘେନ ଆଦିମାତ ।୧୭ ।
ଭାସିଗଲି ଦୟାବହି ରଖ ମାଗୋ ତୁହି ।
ମଝି ସମୁଦ୍ରରେ ମୋର ଭେଳା ଯେ ଭାସଇ ।୧୮ ।
ଜୟ ଜୟ ଭବାନୀ ଗୋ ଦୟାକର ମୋତେ ।
କରଇ ପ୍ରାର୍ଥନା ମୁହିଁ ତୁମ୍ଭ ପାଦଗତେ ।୧୯ ।
ଜୟ ଜୟ ଭବାନୀ ଗୋ ଆତଙ୍କ ନାଶିନୀ ।
ଜୟ ଜୟ ଦୁର୍ଗା ମାଗୋ ଦୁର୍ଗତି ଖଣ୍ଡନୀ ।୨୦ ।
ଜୟ ଜୟ ଭବାନୀ ଗୋ ସର୍ବଦେବ ମାତ ।
ମହିଷାସୁରକୁ ମାରି ରଖିଲୁ ଜଗତ ।୨୧ ।
ଜୟ ଜୟ ଦୁର୍ଗା ରୂପ ପଞ୍ଝା ତୋହର ।
ନାନା ରୂପେ ଯୁଗ ଯୁଗେ ହେଉ ଅବତାର ।୨୨ ।
ତୁହି ପାର୍ବତୀ ଆବର ଅଟୁ ଆଦିମାତ ।
ମହାଭାର ନିବାରଣେ ହୋଇଅଛୁ ଜାତ ।୨୩ ।

ତୁହି ଜୟା ବିଜୟା ଅଟୁ ମୃଡ଼ାଣୀ ।
ସର୍ବାଣୀ ଶିବାନୀ ତୁ ଅଭିମାନୀ ରୁଦ୍ରାଣୀ ।୨୪।
ଦେବୀମାନଙ୍କ ଉପରେ ପାଞ୍ଚକୋଟି ନାମ ।
ଉତ୍କଳ ଦେଶରେ ନାମ ହରଚଣ୍ଡୀ ଜାଣ ।୨୫।
କୋଶଳ ଦେଶରେ ନାମ ଅଟଇ କୋଶଳା ।
କାକଟପୁରେ ତୋହର ନାମ ଯେ ମଙ୍ଗଳା ।୨୬।
ଗଣ୍ଡକିରି ଦେଶରେ ତୋ ନାମ ଗୁଣ୍ଡୁକିରି ।
କଳିଙ୍ଗ ଦେଶରେ ମାଗୋ ତୋ ନାମ କୁଠାରୀ ।୨୭।
ତାଳଚେରରେ ରହିଲୁ ନାମ ତୋ ହିଙ୍ଗୁଳା ।
କଖଡ଼ି ମହାଦେଶରେ ତୁ କୋଟମଙ୍ଗଳା ।୨୮।
ସମ୍ବଲପୁରରେ ନାମ ତୋର ସମଲାଇ ।
ଯାଜପୁରେ ରହିଲୁ ତୁ ବିରଜା ବୋଲାଇ ।୨୯।
ବାଙ୍କିରେ ରହିଲୁ ମାଗୋ ତୋ ନାମ ଚର୍ଚ୍ଚିକା ।
ଗଙ୍ଗାକୂଳେ ନାମ ତୋର ଅଟଇ କାଳିକା ।୩୦।
ବାଣପୁରେ ରହିଲୁ ମା ନାମ ଭଗବତୀ ।
ଭୁବନେଶ୍ୱରରେ ତୋର ଗୌରୀ ନାମେ ଖ୍ୟାତି ।୩୧।
କଟକେ କଟକଚଣ୍ଡୀ ଶ୍ରୀକ୍ଷେତ୍ରେ ବିମଳା ।
ଝଙ୍କଡ଼େ ରହିଲୁ ମାଗୋ ବୋଲାଇ ଶାରଳା ।୩୨।
ବଡ଼ମ୍ବାରେ ଭଟ୍ଟାରିକା ନାମ ଯେ ତୋହର ।
କୋଣାରକେ ହରଚଣ୍ଡୀ ନାମ ଅଟେ ତୋର ।୩୩।

ସିଂହଳରେ ନାମ ତୋର ଅଟଇ ଭବାନୀ ।
ନମଃ ନମଃ ମହାମାୟୀ ନମସ୍ତେ ଜନନୀ ।୩୪।
ଲଙ୍କେଶ୍ୱରୀ ନାମ ତୋର ଅଟଇ ଲଙ୍କାରେ ।
ମାହେଶ୍ୱରୀ ନାମ ତୋର ଅଟେ ଅଯୋଧ୍ୟାରେ ।୩୫।
ବସନ୍ତ ଉତ୍ସବେ ଇଚ୍ଛା ବଳିବାରୁ ତୋର ।
କାହିଁ କ୍ରୋଧ କାହିଁ ଶାନ୍ତି ବିଜୟ ସଂସାର ।୩୬।
ତବ ଶୁଭ ଆଗମନ ଅଧମ କୁଟୀର
କି ଦେଇ ପୂଜିବି ମୁହିଁ କି ଅଛି ମୋହର ।୩୭।
ତୁମ୍ଭଙ୍କୁ ଯେ ଭାବେ ତାକୁ ନପଡ଼େ ପ୍ରମାଦ ।
ସବୁ ତେଜ୍ୟା କରି ମାଗୋ ସେବେ ତବ ପାଦ ।୩୮।
ତେଣୁ କରି ତୋତେ ମାଗୋ ସେବେ ତବ ପାଦ ।୩୮।
ତେଣୁ କରି ତୋତେ ମାଗୋ ସୁମରିଲି ମୁହିଁ ।
ବିପଦୁ ରକ୍ଷାକର ସାହା ମୋତେ ହୋଇ ।୩୯।
ତୁହି ମାତା ହୋଇ ଯେବେ କରିବୁ ଅନାଥ ।
ଶରଣ ରଖିବା ପାଇଁ କେ ହେବ ସାମର୍ଥ୍ୟ ।୪୦।
ମାର ଅବା ତାର ମୁହିଁ ପଶିଲି ଶରଣ ।
ଅଧମ ଘନଶ୍ୟାମକୁ କରିବୁ କାରଣ।୪୧।

## ସର୍ବମଙ୍ଗଳା ସ୍ତୁତି

କାକଟପୁରରେ ତୋର ନିଜଘର ଷୋଳସ୍ତମ୍ଭେ କଲୁସ୍ଥାନ ।
ଅପୁତ୍ରିକ ନାରୀ ପୁତ୍ର ଦାନ ପାଏ ଅନ୍ଧ ପାଏ ଚକ୍ଷୁଦାନ ।

ମାଗୋ ସର୍ବମଙ୍ଗଳା ।
କୃଳେ ଲଗାଅ ପ୍ରାଣୀଙ୍କ ଭେଳା ।୧।
ସଙ୍କଟତାରିଣୀ ବିପଦନାଶିନୀ ନାମ ଅଟଇ ତୋହର ।
ଘୋର ସଙ୍କଟରେ ବିପଦ ପଡ଼ିଛି ମଙ୍ଗଳା ବାରେ ଉଦ୍ଧାର ।
ମାଗୋ ମହିଷା ମର୍ଦ୍ଦିନୀ ।
ହେଲେ ଦନୁଜ ବଳ ନାଶିନୀ ।୨।
ଶିରରେ ସୁବର୍ଣ୍ଣ ମୁକୁଟ ଶୋଭଇ ଲଲାଟେ ଚିତା ସିନ୍ଦୁର ।
ରତ୍ନ ଓଢ଼ିଆଣୀ କଟିରେ ଖଞ୍ଜିଲେ ପାଦରେ ଶୋହେ ନୂପୁର ।
ମାଗୋ ସର୍ବସହିଣୀ ।
ମଥାପରେ ଶୋହେ ମଥାମଣୀ ।୩।
କଳାମେଘୀ ଶାଢ଼ୀ ପିନ୍ଧୁଥାଉ ଭିଡ଼ି ତୋତେ ଦିଶଇ ସୁନ୍ଦର ।
ରଙ୍ଗ ପୁଷ୍ପମାଳ ଗଳାରେ ଲମ୍ବିଛି ପୁଣି ଗୁପସରି ମାଳ ।
ମାଗୋ ହିମ ଦୁଲଣୀ ।
ଲୋକନାଥଙ୍କର ପାଟରାଣୀ ।୪।
ସିଂହ ଯେ ଶାରଳା ବୋଲାଉ ଜନନୀ ବାଙ୍କିଗଡ଼େ ଚର୍ଚ୍ଚିକାଇ ।
ବାଣପୁରେ ଭଗବତୀ ତୁ ବୋଲାଉ ଯାଜପୁରେ ବିରଜାଈ ।
ମାଗୋ ଦୟା ସାଗରୀ ।
ଦୟା ନକଲେ ମୁଁ ଗଲି ସରି ।୫।
କଟକରେ ସୁପ୍ରତିଷ୍ଠ ଚଣ୍ଡୀନାମ କାକଟପୁରେ ମଙ୍ଗଳା ।
ସିଦ୍ଧ ରାମଚଣ୍ଡୀ ବୋଲାଉ ଜନନୀ କ୍ଷେତ୍ର ମଧ୍ୟରେ ବିମଳା ।

ମାତା ସିଂହବାହିନୀ ।
କୃପା ବହିବ ମୋ ଠାରେ ପୁଣି ।୬ ।
ଗାଳି ମୁଁ ସହଇ ଗର୍ବ ନ ସହଇ ଦଣ୍ଡକେ ଚୂନା କରଇ ।
ଯେହୁ ମୋତେ ହୃଦୟରେ ଭାବିଥାଇ ଅଭୟବର ଦିଅଇ ।
ତାର ହୃଦୟ ହୋଇ ।
କୃପା ଦୃଷ୍ଟିରେ ନିରେଖଇ ।୭ ।
ତୋତେ ଯେଉଁ ଜନ ମନ୍ଦ ବିଗ୍ରଇ ବଂଶ ଛେଦଇ ତାହାର ।
ତୋ ଡାକ ଶୁଣିଲେ କାଳିକା ପେଶିବି ଖଡ଼ଗେ ଛେଦିବି ଶିର ।
ଆରେ କହୁଛି ମୁହିଁ ।
ତୋର ବିପତ୍ତି ରହିବ ନାହିଁ ।୮ ।
ଶତ୍ରୁ ଯେବେ ତୋତେ ମନ୍ଦ ବିଗ୍ରିବେ ମୋ ନାମ ଧରିବୁ ଚିତ୍ତେ ।
ତୋର ଡାକକୁ ମୁଁ ଶ୍ରବଣେ ଡେରିଛି ରଖିବି ମାରି ତୁରିତେ ।
ଆରେ କହୁଛି ଏବେ ।
ସର୍ବଠାରେ ଅଛି ଗୁପ୍ତ ଭାବେ ।୯ ।
ଶ୍ରୀମୁଖରେ ଯାହା ଆଜ୍ଞା ଦେଇଅଛି ବୋଲଇ ରଖିବି ତୋତେ ।
ତୋତେ ଯେତେବେଳେ ବିପତ୍ତି ପଡ଼ିବ ପଣତ ଦେବି ତୁରିତେ
ଆରେ କହୁଛି ତୋତେ ।
ତୁହି ଭାବିଥିବୁ ହୃଦେ ମୋତେ ।୧୦ ।
ଘରୁ ଯେତେବେଳେ ବାହାର ହୋଇବୁ ସୁମରିଲେ ନାମ ମୋର ।
ଆଗେ ଆଗୁଆଣି ହୋଇଥିବି ମୁହିଁ ତୁ ଥିବୁ ମୋର ପଛର ।

ଆରେ ଶୁଣରେ ବଙ୍କା ।
ଶତ୍ରୁ ମୁଖେ ଲଗାଇବି କଳା ।୧୧।
ସୁସ୍ଥାନ ଦେଖିଣ ପ୍ରାଚୀ ନଦୀ ତଟେ ତହିଁ ଅଟେ ତୁମ୍ଭ ବାସ ।
ହୀନ ଭକ୍ତ କହେ ମୋ ଦୁଃଖ ନଗଲା ମାଆଙ୍କୁ କରିଣ ଆଶ ।
ମାଗୋ ରଖିବ ମୋତେ ।
ତୁମ୍ଭ ପଣତ ତଳେ ତୁରିତେ ।୧୨।

## ବୃନ୍ଦାବତୀଙ୍କ ସ୍ତୁତି

ମାଗୋ ତୁଳସୀ ଦେବୀ, ଅଟୁ ଶ୍ରୀକୃଷ୍ଣ ପ୍ରାଣବଲ୍ଲଭୀ ।୧।
ପ୍ରଭାତୁ ଉଠିଣ ତୋ'ମୁଖ ଚାହିଁଣ ସନ୍ଧ୍ୟାକାଳେ ସଞ୍ଜ ଦେଇ,
ଓଦା ବସ୍ତ୍ର ପିନ୍ଧି ତପ। ବସିଛନ୍ତି ମଧ୍ୟେ ବସେ ବସୁନ୍ଧରା ।
ଚାରି ପାଶେ ଚାରି ଚାମର ଢ଼ାଳନ୍ତି ରକ୍ମିଣୀ ଲିପେ ଚଉଁରା ।୩।
ସତ୍ୟ ଯୁଗେ ତୋର ସତ୍ୟବତୀ ନାମ ତ୍ରେତା ଯୁଗରେ ମାଳତୀ ।
ଦ୍ୱାପର ଯୁଗରେ ନାମ ତୋ ତ୍ରିପୁରା, କଳିଯୁଗେ ବୃନ୍ଦାବତୀ ।୪।
ତୁଳସୀର ମାଳ ତୁଳସୀର ଦଳ ତୁଳସୀ ଭୂଷଣ ହୋଇ ।
ତୁଳସୀ ମୂଳରେ ଲୟ ଲଗାଇଲେ ନୀଳଚକ୍ର ଦିଶୁଥାଇ ।୫।
ମୂଳେ ତୋର ଗଙ୍ଗା ଡାଳେ ତୋର ବିଷ୍ଣୁ ପତ୍ରେ ଦେବତାଙ୍କ ବାସ ।
ତୋ ପତ୍ର ପଡ଼ିଲେ ମଣୋହୀ ହୁଅଇ କହଇ ଗୋଲକ ଦାସ ।୬।

